# ଜହ୍ନ ରାତି

ଶ୍ରୀମତୀ ଯଶୋଧାରା ମିଶ୍ର



ଫ୍ରେଣ୍ଡସ୍ ପବ୍ଲିଶର୍ସ
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦ ବିହାରୀ . କଟକ - ୨

**ଜହ୍ନ ରାତି**—ଲେଖିକା : ଶ୍ରୀମତୀ ଯଶୋଧାରା ମିଶ୍ର, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଥମ ସଂସ୍କରଣ : ୧୯୮୭, ପ୍ରଚ୍ଛଦ : ଅସିତ୍ ମୁଖାର୍ଜୀ, ମୁଦ୍ରଣ : ନନ୍ଦକିଶୋର ପ୍ରେସ, କଟକ-୨

**JANHA RATI**—Author : Srimati Jasodhara Mishra. Publisher . Sahadev Pradhan. Friends' Publishers, Binodbehari, Cuttack-763002, Orissa ( India ) 1st Edition : 1987, Cover Design : Asit Mukharji, Printed at . Nandakishor Press, Cuttack-2, Price—Rs. 20.

## ସୂଚୀପତ୍ର

# ଜନ୍‌ସାଉ

ସୁଷମା ଚଉକାଟିରେ ବସି ପଢ଼ୁଥିଲେ କେତେବେଳେ, ହାତରେ ତାଙ୍କର ତଥାପି ଖୋଲା ଚଠିଟି । ଗାଧୁଆ ଘରୁ ସୀତୁର ବେସୁରୁଆ ସିନେମା ଗୀତ ଶୁଭୁଚ; ଏଇନା ସେ ଗାଧୋଇ ସାର ବାହାର ଆସିବ । ସୁଷମାଙ୍କୁ ସାମ୍ନା କରବାକୁ ହେବ ତାକୁ ।

କେମିତ ? କେମିତ ସାମ୍ନା କରବାକୁ ହୁଏ ଆଜକାଲର ଝିଅଙ୍କୁ ? ସୀତୁ ପର ଗୋଟିଏ ଝିଅର ହାତଲେଖା ପ୍ରେମ ପତ୍ରଟିଏ ତା ବହି ଭିତରୁ ଆବିଷ୍କାର କଲା ପରେ ତା ମା କ'ଣ କରେ ?

କବାଟ ଖୋଲବାର ଶବ୍ଦ ହେଲ ଓ ସୀତୁ ବାହାର ଆସିଲ । ଗାଧୁଆ ଘରର ନଭୃତ କକ୍ଷ ଭିତରୁ ବାହାର ଆସିଲ ମାତ୍ରେ ଗୀତ ଧିମେଇ ଆସି ଗୁଣୁଗୁଣୁରେ ପହଞ୍ଚିଚ । ଓଦା ବବ୍‌ବାଳ ତଉଲିଆରେ ପୋଛୁ ପୋଛୁ ଗୀତ ମଝିରୁ ପଗ୍ଚରୁଚ—"ମା, ମୋ ଟେବୁଲରେ ବସି ପଢ଼ୁଚୁ ନା କ'ଣ ?" ତା ସ୍ୱର ହସିଲ, ପିଲାଳିଆ ।

ସୁଷମା କୋଉ ଛଟକରେ ଚଠିଟି ବ୍ଲାଉଜ୍ ଭିତରେ ପୂରାଇ ସାରଥିଲେ । ଚଉକାରେ ସେମିତ ବସି ରହି ସୀତୁ ମୁହଁକୁ ନ ଚାହିଁ ଭାବହୀନ ଉତ୍ତର ଦେଲେ—"ବହୁତ ମଇଳା କର ପକେଇଚୁ ତୋ ଟେବୁଲ ।"

—"ଥାଉ ଥାଉ ମା ପ୍ଲିଜ୍ ! ମୁଁ ନଜେ ସଜାଡ଼ି ଦେଉଚ, ଏଇନା ସଜାଡ଼ି ଦେବ ।"

ସୁଷମା ବସି ରହିଲେ । କିଏ କହିଲ ମୁଁ ସଜାଡ଼ି ଦେଉଥିଲ ବୋଲ, ମୁଁ ତୋତେ କୈଫିୟତ୍ ଦେଉନାହିଁ । କିଏ ବା କହୁଚ ତୋତେ କଥା କହିବାକୁ । ଚୁପ୍ ରହ, ମୁଁ ସମ୍ଭାଳିଯାଏ ପଚାରିଲେ ।

—"କ'ଣ ହେଲା ମା ରାଗିଚୁ କି ?"

ମନ ହେଉଥିଲା ତା ଆଖିକୁ ସିଧା ଚାହାନ୍ତେ, ପଚାରନ୍ତେ— ମୋତେ ଜବାବ୍ ଦେ, କେବେଠୁ ଏମିତି ଧୋକା ଦେବାକୁ ଶିଖିଲୁଣି ତୁ ? ଆଲୁଛୁ ବାଲୁଛୁ ବନ୍ଧା ଖାତା ଭିତରେ ଏମିତି ବୋମାଟିଏ ଲୁଚାଇ ମୋ ସାଙ୍ଗେ ଗେଲେଇ ହେଉଚୁ କିଛି ନ ଜାଣିଲା ଭଳି ? ଏତେ ସାହସ ତୋର ? ଏତେ ପେଞ୍ଚ ତୋ ପେଟ ଭିତରେ ?

—"ମା, ମାମା କୁହନ୍ତି, କଲିକତାରୁ ଏଥର ଫାଣ୍ଟାଷ୍ଟିକ୍ ଜୋତା ହଳେ ଆଣିବ ।"

ସୁଷମା ବୁଲି ଚାହିଁଲେ, କାନ୍ଥର ଲମ୍ବା ଦର୍ପଣ ପାଖେ ସେ ମୁଣ୍ଡ କୁଣ୍ଡାଉଚି, ଦର୍ପଣରେ ଦିଶୁଚି ତା'ର ନିର୍ମଳ ପନ୍ଦର ବର୍ଷର ମୁହଁ । ହାତର ପାନିଆଁ ରହିଯାଇଚି, ଦର୍ପଣ ପାଖକୁ ନଇଁ ପଡ଼ି ବାଁ ହାତ ନଖରେ ଗାଲର ବ୍ରଣକୁ ଖୁଣ୍ଟୁଚି ।

ସୁଷମା ଚଟକିନି ମୁହଁ ଫେରେଇନେଲେ—ଚିନ୍ତା ଚିନ୍ତଫଟଟି ମଝିରୁ ଫାଟି ଖଣ୍ଡ ଖଣ୍ଡ । ନା ଦେଖି ହେଉଚି, ନା ଆଉ ଯୋଡ଼ି ହେବ । ତଉଲିଆ ଗୁଡ଼ି ଉଠୁ ଉଠୁ କହିଲେ—"ପାଠପଢ଼ା ଦିନରେ ଯେତେକ ବାଜେ ଚିନ୍ତା ସବୁ ମନରେ, ଖାଲି ଜୋତା—ଡ୍ରେସ୍—"।

କହୁ କହୁ ସେ ବାହାରି ଆସିଲେ, ଦର୍ପଣର ମୁହଁଟି ଆଡ଼େ ଚାହିଁ ନାହାନ୍ତି । ଦାଣ୍ଡ ବାରଣ୍ଡାରେ ବସି ବାବୁନି ଅଠା ଆଉ କାଗଜ ପଟାଗୁଡ଼ାଏ ନେଇ କ'ଣ ଗୋଟାଏ ଯୋଡ଼ାଯୋଡ଼ି କରି ତିଆରି କରୁଚି, ତା ସ୍କୁଲର ହି.ଫ୍ଟ୍ କ୍ଲାସ୍ ଲାଗି । ଲମ୍ବ ବାରଣ୍ଡାର କଣକୁ ଥୁଆ ଯାଇଥିବା ନୂଆ କୁଣ୍ଡଟିର କମଳା ଗଛଟିକୁ ଦେଖାଇ ପଚାରିଲା—"ଇଏ କ'ଣ ?"

ସୁଷମା ଚୁପଚାପ ମଝି ବେତ-ଟେବୁଲ ଉପରୁ ଆଜିର ଖବର କାଗଜ ଉଠାଇଲେ । ବାବୁନି ମୁହଁ ଗୋଜା କରି ଏକ ଲୟରେ ପଟା ଖଣ୍ଡିଏ କାଟୁ କାଟୁ ରହିଯାଇ ପୁଣି ପଚାରିଲା—"ସେଇଟା ଲେମ୍ବୁଗଛ ପରି ଦିଶୁଚି । ଏଗୁଡ଼ା କ'ଣ ଏମିତି ଗମ୍‌ଲାରେ ଲଗାଯାଏ ?"

—"ଲଗାଯାଏ । ତୋର ଏତେ ଚିନ୍ତା କାହିଁକି । ଗାଧୋଇକରି ଯା, ସ୍କୁଲ୍ ବେଳ ହୋଇଯିବ ।" ସୁଷମା ତା ପରେ ଖବର କାଗଜ ଖୋଲି ନିଜ ଆଗରେ ମେଲି ଧରିଲେ ଓ ଦୁର୍ଗତି ଭିତରେ ଏବ ପାଇଁ କାର୍ଯ୍ୟପନ୍ଥା ସ୍ଥିର କଲେ । ଏମିତି ବଜ୍ର ତ ପଡ଼ିଯାଇ ନାହିଁ କିଛି । ଅଭିମାନରେ କାନ୍ଦିଲେ କି କାନ୍ଦ ଘୋଡ଼େଇଲେ ଘର ନିଆଁ ବି ଲିଭିଯାଏ ନାହିଁ ଆପେ ।

ଆଜି ଷିତୁ କଲେଜ ଯିବା ପୂର୍ବରୁ ହିଁ । ଏଡ଼ିକି ଟିକିଏ ପିଲା ତୁ । ଛି ଛି, ବାପା ଜାଣିଲେ କ'ଣ ଭାବିବେ, କେତେ ମନ ଦୁଃଖ କରିବେ ଭାବିଲୁ ।

ନିଜ ଉପରେ ରାଗ ଆସୁଛି । କାହିଁକି ଘଟୁଛି ଏମିତି ଅନାହୂତ କଥା । କ'ଣ ଭୁଲ ରହିଗଲା ଷିତୁକୁ ବଢ଼େଇବାରେ ?

ମୁଁ ତ ଶୁଣିଥିଲି ଏମିତି କିଛି ପାଇଁ ବେଶି ଦିନ ନାହିଁ । ଯେବେଠୁ ସେ ସ୍କର୍ଟ ପିନ୍ଧା କାହିଁକି ଛାଡ଼ିବ ବୋଲି ଆଶ୍ଚର୍ଯ୍ୟ ହେଲା, ତା ଜଙ୍ଘ ଗୋଲେଇ ଦୃଷ୍ଟି କିଛି ଦିଶୁଚି ଜାଣି ବି । ଜନ୍ମଦିନ ପାଇଁ ଏଥର ଶାଢ଼ୀ କିଣିଦିଏ କହିଲାରୁ ଜିଦ୍ କରି ଜିନ୍, ଟି-ସାର୍ଟ କିଣିଲା; କହିଲି ମାଇଲିଏ ଲମ୍ବ ଶାଢ଼ୀରେ କିଏ ବାନ୍ଧି ହେବ, ଶାଢ଼ୀଟା କେବଳ ସୌଖୀନ ସାନ୍ଧ୍ୟ-ପୋଷାକ ହେବା ଉଚିତ । ଆଉ ଏବେ ପୁଣି କି ଜବାବ ଦେବ କେଜାଣି !

ସୁଷମାଙ୍କ ଛାତି ଛଉଁକିନା ଦବିଗଲା । ଷିତୁ ଜବାବ୍ ଦେବ ।

ତା କଅଁଳ ମୁହଁ ସେମିତି କଅଁଳ ଦିଶୁଥିବ, ପଚାରିବ—"କ'ଣ ଭୁଲ ହେଲା କି ମା ? ଆଇ ଲଭ୍ ସଞ୍ଜିଶ୍, ବିଲଭ୍ ମି ।"

ଖବରକାଗଜକୁ ଅସମାନିଆ କରି ଦୁଇଭାଙ୍ଗ ମୋଡ଼ି ଦେଇ ସୁଷମା ଉଠିଲେ, ଅଣନିଃଶ୍ୱାସୀ ଲାଗୁଚି । ରବିବାବୁ କେତେବେଳେ ଫେରିବେ, ସକାଳୁ ଯାଇଚନ୍ତି ।

ଷିତୁ ବାହାରି ଆସୁଚି ତାଙ୍କ ଶୋଇବା ଘରୁ, ତା ମା'ର ଲିପଷ୍ଟିକ୍‌ରୁ ଟିକିଏ ମାରିଦେଇଚି କି ପୁଣି ଓଠରେ ? ନା, ସନ୍ଧ୍ୟାରେ

କେବେ କେମିତି ସିନେମା ଗଲାବେଳେ ଆଜକାଲି ସେ ଲୁଚେଇ ମାରିଦିଏ। ଏବେ ସ୍କୁଲ ଡ୍ରେସ୍‌ରେ ବାହାରିଚି, ସ୍କର୍ଟ୍ ତଳଠୁ ମୋଜାଯାଏଁ ଖୋଲା ଚିକ୍‌କଣ ଗୋଡ଼, ବେଲ୍ ଭିଡ଼ା ବ୍ଲାଉଜ୍‌ରେ ନୂଆ କରି ବଢ଼ିଥିବା ଛାତିକୁ ଲୁଚେଇବାର କୌଣସି ଅଭିପ୍ରାୟ ହିଁ ନାହିଁ। ପ୍ରସାଧନହୀନ ସଫା ମୁହଁ, କହୁଥିଲା ସ୍ନୋ ମାରିଲେ କାଳେ ବ୍ରଣ ବେଶି ହୁଏ ବୋଲି। ସଜାଗ ଚଢ଼େଇଟିଏ ପରି ନିର୍ଭିକ ଦୃଷ୍ଟି, ଅଯଥା ସନ୍ତର୍ପଣ କି ଆତ୍ମସଚେତନ ନୁହେଁ। ଚାଲି ଯାଉ ଯାଉ କହୁଚି ନିଜ ଖଇରିଆ ସ୍କର୍ଟ୍‌କୁ ଦେଖାଇ— ଏଇଟା ଗ୍ୟାରେଣ୍ଟି ଦିଆ ଟେରିକଟ୍? ରଙ୍ଗ ଛାଡ଼ କେମିତି ଛିପିଚିପିକିଆ ଦିଶିଲାଣି ଦେଖିଲୁ?

ସୁଷମା ସ୍କୁଲ କଲେଜରେ ପୁଅଙ୍କ ସଙ୍ଗେ ପଢ଼ିଛନ୍ତି, ଶେଷ ସ୍କୁଲ ଜୀବନରେ ସଲୱାର୍-କମିଜ୍ ବି ପିନ୍ଧୁଥିଲେ ଦିନାକେତେ। ତେବେ ପଢ଼ିବାକୁ ଗଲାବେଳେ ଦାମୀ ସୌଖୀନ୍ ଲୁଗା ବାହାରେ ହିଁ ନାହିଁ। ମା'ର ଦୃଷ୍ଟି ଖୁଣ୍ଟିନାଣ୍ଟି ଦେଖିଲାକ୍ଷଣି ଲାଜ ଲାଗେ ଦେହଟା ଦିନେ ଫିଟିଆସିବା ଯେମିତି ସୁଷମାର ଫୁଲେଇପଣ, ମଣ୍ଡିଦିଆ ଲୁଗା କି ମୋଟା ଓଢ଼ଣୀ ସତ୍ତ୍ୱେ ଛାତି ଫୁଟି ଦିଶିବାର ବେହିଆମୀ ଭିନ୍ନ ଅନ୍ୟ କାରଣ ନାହିଁ। ଦୃଷ୍ଟିରେ ଶାସନ ହିଁ ନଥାଏ, ଥାଏ ନଗ୍ନ କରିଦେବାର, ଦୋଷ ଧରି ଘଟେଇ ପାତାଳ ପ୍ରବେଶ କରେଇ ଦେବାର ଉଦ୍ଦେଶ୍ୟ। ସେ ଦୃଷ୍ଟି, ସେ ଓଠ ନାକ ଟେକିବାର ଆଗ୍ରହ, ଖାଲି କାନ ସଜାଡ଼ିବାକୁ କୁହେ ନାହିଁ, କାନ୍ଧ କୁଜା ହେଇ ପିଠିକୁ ଗୋଳେଇ ଦିଏ, ଖାଲ ଭିତରେ ଉବୁଯାଉ, ନ ଦିଶୁ ଛାତିର ନିର୍ଲଜ୍ଜ ସ୍ଥାପତ୍ୟ। କାଠବୁକାନୀ ଆଦିବାସୀ ଝିଅଟିର ମୁଣ୍ଡରୁ ଯେତେବେଳେ ତା ଦଳର କେଉଁ ପୁଅଟି ବୋଝ ଓହ୍ଲେଇ ଦେଉ-ଥାଏ ଓ ଲୁଗା ସଜାଡ଼ୁ ସଜାଡ଼ୁ ଚେପିନାକୀ ଝିଅଟି ହିଁ ହିଁ ହସେ, ମା ଗମ୍ଭୀର ହେଇ ପଇସା ଗଣି ଦେଉଥାନ୍ତି, ସୁଷମା ଭାବେ ଆଖି ଆଗରେ ଏତେ ନିର୍ଲଜ୍ଜ ଅମଣିଷପଣିଆ ମା ସହୁଚନ୍ତି କେମିତି!

ରୋଷେଇ ଘରେ ରଘୁ ରନ୍ଧାବଢ଼ା ଖୁଣ୍ଟୁ ଚୁଖାଡ଼ୁରୁ କରୁଚି।

—"ରଘୁ, ତରକାରି ହେଲା? ବାବୁଲା ଗାଧୋଇବାକୁ ଗଲାଣି, ଏଇନା ଖାଇବାକୁ ବସିବ।"

ଘଣ୍ଟୁ ବି ବସିବ । ବାବୁଲ୍ ଆଗ ଚାଲିଯାଏ, ତା ସ୍କୁଲ ଦୂର । ଘଣ୍ଟୁ ପଢ଼ାଘରୁ ପୁଣି ଗୁଣୁଗୁଣୁ ଶୁଭୁଛି—ଏତେ ଗୀତ କାହିଁକି ?

—"ଘଣ୍ଟୁ, କ୍ଲାସ କେତେବେଳେ ଅଛି ?"

—"ସାଢ଼େ ଦଶ ।"

—"ବେଶ୍, ପଢ଼ୁନୁ ଯଦି ଖାଇବାକୁ ବସ । ବାବୁଲ୍‌କୁ ଡାକ । ପୁଣି ଡେରି ହେଲା କହି ନ ଖାଇ ଚାଲିଯିବ, କେତେ ଆଉ ମୁଁ ତମର ପ୍ରତି କଥା ବୁଝୁଥିବ ?"

କାହିଁକି ଏସବୁ କହୁଚନ୍ତି ସେ । କାହିଁକି ସିଧା ପାଖକୁ ଡାକି ରେକ୍‌ଠେକ୍ କହିଦେଉ ନାହାନ୍ତି ।

ରବିବାବୁ ସକାଳୁ ଜଳଖିଆ ଖାଇ ବାହାରି ଯାଇଚନ୍ତି, ଦିନ ଗୋଟାଏ ଦେଢ଼ଟା ବେଳେ ଖାଇବା ପାଇଁ ଆସିବେ । ସେ ହିଁ ଦାୟୀ, ସବୁ ଦୋଷ ତାଙ୍କର । ହେଲା ତ ? ମୂଳରୁ କିଛି ନଥିଲ ଆକଟ କରି ବୋଲି ? କାହିଁକି ସାନ ସାନ କଥାରେ ଆକଟ କରାଯିବ ନାହିଁ ? କାହିଁକି ତାର କହିଲାପାକେ କଥାଯିବ - 'କିଏ ମୋର ପିନ୍ଧିବ ମାଇକିଏ ଲମ୍ବ ଶାଢ଼ୀ' ? ସତେ କି ତା ଇଚ୍ଛା ଉପରେ ନିର୍ଭର କରୁଛି ସବୁ !

ପିଲାଦିନେ ମା'ର ସ୍ୱର ଶୁଭୁଯ ଏ ସୁଷ୍ଟି, ଭାଙ୍ଗିଯିବ ମା ରଖି ଦେ । ଦାମୀ ଖେଳନାଟା, ଆଲମାରିରେ ରଖିଦେବା ।

ଦାମୀ ଖେଳନାମାନ କାଚଆଲମାରିରେ ଶୋଭା ପାଉଥିଲା, ବର୍ଷ ପରେ ବର୍ଷ ଓ ସେଇ ବର୍ଷମାନଙ୍କ ଭିତରେ କେବେ ଦିନେ ସେ ଦେଖିଲେ ଏଥର ଆଉ ତଳୁ ଟିପିରେ ଠିଆହୋଇ ଉହୁଙ୍କି ଆକାଶ ଉଞ୍ଚ ଆଲମାରି ଥାକରୁ ମହାର୍ଘ ଖେଳନାମାନଙ୍କୁ ଦେଖିବାକୁ ହୁଏ ନାହିଁ । ଆଲମାରି ଥାକ ଏବେ ନିଜ ଉଚ୍ଚରେ, ଅନେଇଲେ ନାକସିଧା ଖେଳନାମାନ—ରଙ୍ଗ ଫିକା ପଡ଼ିଆସିଥିବା ଗ୍ଲେଟିଆ ଗ୍ଲେଟିଆ ପ୍ରାଣହୀନ ଖେଳନା, ଚିରଦିନ ଲାଗି କାଚ ସେପାଖେ କାନ୍ଥର ଖୋପ ଭିତରେ ।

ଘଣ୍ଟୁ, ବାବୁଲ ଖାଇବାକୁ ବସିଚନ୍ତି, ସବୁଦିନ ପରି ସୁଷମା ବସିଚନ୍ତି ପାଖରେ । ରନ୍ଧା ବାଢ଼ୁଛି, ଅନ୍ୟଦିନ ପରି ବଳେଇବାକୁ ଇଚ୍ଛା

ହେଉନାହିଁ, ଥକ୍‌କା ଲାଗୁଛି । ଖୁକୁ ପଚାରୁଛି—"ମା, ତୁ ନିଶ୍ଚେ ଜଳଖିଆ ବି ଖାଇ ନ ଥିବୁ ?"

—"ମୋର ଆଜି ଶୁକ୍ରବାର ବ୍ରତ ।"

ଖୁକୁ ବାବୁଲି ମୁହଁକୁ ଚାହିଁ ଉଜ୍ଜ୍ୱଳ ପଡ଼ି ହସୁଛି । ମୁହଁରେ ବାଁ ହାତ ପାପୁଲି ଦେଇ ହସ ରୋକିବାର ବାହାନା କରୁଛି—"ମାନେ, ସତରେ ତୁ ଆରମ୍ଭ କରିଚୁ, ଅନେଷ୍ଟଲି ?"

ତୁ ଖିଲ୍ ଖିଲ୍ ହେଇ ମୋ ଆସନ ଟଳେଇ ପାରିବୁ ନା । ତୋ ବ୍ୟକ୍ତିସ୍ୱ ଜୀବନକୁ ନିୟନ୍ତ୍ରଣ କରିବ ମୁଁ, ତୋ ପିଲାଳିଆମୀକୁ ମାନିବ ହିଁ ନାହିଁ ।

ବାବୁଲି ପଚାରୁଛି—"ଶୁକ୍ରବାର ଗୋଟେ ବି ବ୍ରତ ? ଆଉ ସେ ଗମ୍‌ଲାରେ କି ଗଛ ମା ? ବ୍ରତ ଲାଗି ଦରକାର ?"

—"ସେଇଟା ତାଙ୍କ ଲେଡ଼ିଜ୍ କ୍ଲବ୍‌ରେ ଲେଟେଷ୍ଟ୍ କି ଗୋଟାଏ ଆର୍ଟ ଶିଖାଯାଉଚି ।"

—"ଶୁକ୍ରବାର ବ୍ରତ ଶିଖାଯାଉଚି ତମ କ୍ଲବ୍‌ରେ ?"

—"ଧେତ୍ ! (ଖୁକୁର ଆହୁରି କରି କରି ହସ) ସେ ଗଛଟା । କ'ଣ ତ ମା ସେ ଆର୍ଟର ନାଁ ? ବନ୍‌ସାଇ ନା ?"

ତାପରେ ସୁଷମାଙ୍କୁ ନିରୁତ୍ତର ଦେଖି ନିଜେ ବାବୁଲିକୁ ବୁଝେଇଲା—"କ'ଣ ସବୁ କେମିକାଲ୍ ଦେଇ ଗଛମାନଙ୍କୁ ଠିକାକରି ରଖାଯାଏ ।"

ସୁଷମା ଗାଲରେ ହାତ ଦେଇ ଦୁହିଁଙ୍କୁ ଦେଖୁଥିଲେ । ତାଙ୍କ ମନକୁ କ୍ଲବ୍‌ର ନୂଆ ପ୍ଲାନ୍ କଥା ଆସିଲା, ଭୁଲିଯାଇଥିବା ଉତ୍ସାହ ମୁହୂର୍ତ୍ତକେ ଫେରି ଆସିଲା । ଆଉ କେତେବେଳେ ସକାଳର ଓଜନିଆ ଭାବଟା ମନରୁ ଖସିଗଲା ସେ ଖିଆଲ୍ କରିପାରିଲେ ନାହିଁ । ଖୁକୁକୁ ମଝିରୁ କାଟି କହିଲେ—"କେମିକାଲ୍ ଦେଇ ନୁହଁ, ଡାଳ କଟାଯାଏ । ଗୋଟାଏ ଆର୍ଟ । କେବଳ ସମୟ ଦେଖି ଡାଳ କାଟିବାରେ ହିଁ ବାହାଦୁରୀ—

ପ୍ରତିଥର ଡାଳ ପୁଣି କଅଁଳିବ, ହେଲେ ଆଗଭଳି ନୁହେଁ । ତା'ଙ୍କୁ ବ୍ ଲାଗିବ—ଶେଷରେ ଏଡ଼କି ଟିକିଏ ଟିକିଏ ଗଛମାନ କୁଣ୍ଡରେ ଥିବ, ଫୁଲ ଧରିବ, ଫଳ ଧରିବ, କମଳା ଡାଳିମ୍ବ ଫଳିଥିବ ବି, ବରଗଛରୁ ଓହଳ ବି ଝୁଲୁଥିବ—ତା ଜାତିର ବଡ଼ ଗଛରୁ କିଛି ଫରକ୍ ନାହିଁ, ଖାଲି ଯାହା ପ୍ରକୃତିର ମିନିଏଚର୍ ।"

ତାଙ୍କ ଉତ୍ସାହକୁ ହଠାତ୍ ଥମକାଇ ଦେଇ ଶତ୍ରୁ କହିଲା—ପାଣି ପିଇଦେଇଥାଏ ବୋଲି ଊର୍ଦ୍ଧ୍ୱଶ୍ୱାସ ହେଲାପରି—"ହେଲେ ଯାହା କହ, ଏଇଟା ଆର୍ଟ କିଛି ନୁହଁ । ସାଇନ୍‌ସ କି କ୍ରଫ୍‌ଟ କିଛି ଗୋଟେ କୁହାଯିବା କଥା । ଡ୍ରଇଂରୁମ୍‌ରେ ରଖିବ ବୋଲି ଗୁଳ୍ମକରେ ବାମନ କରିବ ଗଛଟିକୁ । ପାଣି, ଖତ ଦେଇ ପାଳୁଥିବ, ଏଣେ କତୁରୀଟାଏ ଧରି ଜଗିଥିବ, କାଟି ଚାଲିଥିବ ବର୍ଷ ବର୍ଷ ଧରି ।"

—"ତୋର ଗୋଟାଏ ବକ୍ ବକ୍ ସବୁକଥାରେ । ଅଧାଖାଇ କୁଆଡ଼େ ଉଠିଲୁ ?"

ହାତ ଧୋଉ ଧୋଉ ଶତ୍ରୁ କୈଫିୟତ୍ ଦେଇଚି କିଛି ଶୁଣା-ଯାଉନି । କାନ ଝାଇଁ ଝାଇଁ ଲାଗୁଚି । ଦେଖେଇପଣ । ସବୁ କଥରେ ଜାଣି ଶୁଣି କଥା କାଟିବା, ଯୁକ୍ତି କରିବା, ମୁଁ ଅଲଗା ବୋଲି ଦେଖେଇ ହେବା । ସତେ ଯେମିତି 'ହଁ' କରିବା ଆମବେଳେ ଚିତ୍ତ ଭିତରୁ ବାହାରି ଆସୁଥିଲା ଆପେ, ସେଥିଲାଗି କଷ୍ଟ, ସାଧନା କିଛି ଲୋଡ଼ା ହୁଏ ନାହିଁ । କେଉଁ ନଆଁରାପଣ ଦେଖେଇ ହେଉଛୁ ତୁ ? ସେଇଟା ମୋଓଠ ଭଲ-ପଣିଆ, ଉଦାରତା । ଚିତ୍ତ ଭିତରୁ 'ନାହିଁ' ଆସି ଓଠ ସେପାଖେ ଲୁଖିଯିବା ଲାଗି ଭପ୍ସ ମୁଁ ହିଁ ଚୋଟେ ଦେଇ ନଥିଲି କେବେ । ମୋ ହାତରେ କ'ଣ କତୁରୀ ନ ଥିଲା !

ଶତ୍ରୁ ହାତ, ମୁହଁ ଧୋଇ ତଉଲିଆରେ ପୋଛୁଚି । ଏଇନା ବହ୍ୱା ଧରି ଚାଲିଯିବ, ବାହାରି ଯିବ ହାତରୁ, ଡାଳ ବଢ଼ିଯିବ ଆକାଶକୁ ।

ଶେଷ ପର୍ଯ୍ୟନ୍ତ ଶତ୍ରୁ ବହ୍ୱା ଧରି ଜୋତା ପିନ୍ଧି ବାହାରିଗଲା, ସୁଷମା ମୁହୂର୍ତ୍ତି ମୁହୂର୍ତ୍ତି କରି ଗଣୁଥାଆନ୍ତି ହାତରୁ ଚାଲିଯାଉଚି ବୋଲି । ତା'ପରେ ତାଙ୍କର ସ୍ଥିର କରିବା କଥା—ଏଥର ଏକୁଟିଆ ସମସ୍ୟାଟି

ସମ୍ଭାଳି ପାରିବାର ବିଶ୍ୱାସ ଅଛି ନା ରବିବାବୁଙ୍କ ସାହାଯ୍ୟ ନେବାକୁ ହେବ । ଭାବୁ ଭାବୁ ସେ ଶୋଇବା ଘରକୁ ଗଲେ, ଆଉ ଆଲମାରି ଖୋଲି ଲୁଗାଥାକ ତଳୁ ଟାଣି ଆଣିଲେ ଲେଟର ପ୍ୟାଡ୍‌ଟିଏ । ଅବ୍ୟବହୃତ, ବନ୍ଦ ଜରିକାଗଜ ପ୍ୟାକେଟ ଭିତରୁ ତାର ଖୋଳଟି ଦିଆହେଲା ପରି ଫିକା କୋଣୀକମକରା ଚନ୍ଦନ ରଙ୍ଗର କାଗଜ ସେମିତି ସଫା ଦିଶୁଛି, ଧନେଶ ପ୍ରେଜେଣ୍ଟ କରିବାର କେତେବର୍ଷ ହୋଇଗଲା ? କେତେଦିନରୁ ରହିଛି ଏ ଏମିତି ଶାଢ଼ୀ ବ୍ଲାଉଜ୍ ଥାକ ତଳେ, ପାଞ୍ଚବର୍ଷ ହେବ, ନା ବେଶି ?

ଧନେଶ ଜଣେ ଇଣ୍ଟେଲେକ୍‌ଚୁଆଲ ବେଶପୋଷାକର ଜର୍ଣ୍ଣାଲିଷ୍ଟ, ଆସି କିଛିଦିନ ରହିଥିଲା ଏଠି । ମଝିରେ ମଝିରେ ବୁଲିବାକୁ ଆସେ, ଶିତୁ ବାବୁଲ୍‌ଙ୍କ ପାଇଁ ଟଫି ଆଣେ । ତା କାନ୍ଧରୁ ଝୁଲୁଥିବା ମୋଟା ନେଳି ବ୍ୟାଗ୍ ଭିତରୁ ମ୍ୟାଜିକ୍ ପରି ବିଭିନ୍ନ ଫଟୋ, ବିଦେଶୀ ମାଗାଜିନ କାଟିଂ ଦେଖାଏ । ତା ଲେଖା, ଅଭିଜ୍ଞତା ବିଷୟରେ ଗପେ ରବିବାବୁ ଓ ସୁଷମା ଆଗରେ, ବେଳେ ବେଳେ କେବଳ ସୁଷମା ଆଗରେ । କହେ ଯେ ବିଭିନ୍ନ ସ୍ଥାନରେ ତା'ର ଆଗ୍ରହ, ମଣିଷଙ୍କଠି ଓ ମଣିଷଙ୍କ ସାଙ୍ଗେ ସମ୍ପର୍କରେ ତାର ଆଗ୍ରହ । ବିନା ପରିସ୍ଥିତି ଓ ଉପକ୍ରମଣିକାରେ ଦିନେ ତା ମୋଟା ନେଳି ମୁଣି ଭିତରୁ ଏଇ ଲେଟରପ୍ୟାଡ୍‌ଟି କାଢ଼ି ଉପହାର ଦେଲା ସୁଷମାଙ୍କୁ, ତା' ଯିବାର ପୂର୍ବଦିନ । ମନା କରିଦେବାକୁ ଯେମିତି ସୁଷମାଙ୍କର ମୁହଁରେ ଫୁଟିଲାନି, ସେ ପଚାରି ବି ପାରି ନ ଥିଲେ—ଏମିତି କାଗଜରେ ମୁଁ ଭଲା କାହାକୁ ଲେଖିପାରିବି ସତେ ? କାହିଁକି ମୋତେ ଦେଉଛ ?

ବୋଧେ ଧନେଶ୍ ଜାଣିଥିଲା ଯେ ସୁଷମାଙ୍କୁ ଲେଖିହିଁ ଆସେ ନାହିଁ । ସେ ପ୍ୟାଡ୍‌ଟି ଗୋପନରେ ରହିଛି ସେମିତି ଆଜିଯାଏଁ, ଆବିଷ୍କୃତ ହୋଇ ନାହିଁ । ସୁଷମା ନିଶ୍ଚିନ୍ତ ଯେ ଆବିଷ୍କୃତ ହେଲେ ବି ତାର କହିବାର ନାହିଁ କିଛି, କୌଣସି ଅନୁଭବର ଚିହ୍ନ ନାହିଁ ତା ଦେହରେ—କେବଳ ହଠାତ୍ ସୁଷମାଙ୍କ ନିଜସ୍ୱ ଏକାନ୍ତତା ଭିତରୁ ବାହାରି ଯାଇ ସାଧାରଣ ପାଲଟିଯିବ ଯାହା ।

ସୁଷମା ଜରି କାଗଜର ଖୋଳ ଚିରିଲେ ଓ ଶିତୁର ଏକ୍‌ସର-ସାଇଜ ଖାତାରୁ ଚିରା କାଗଜରେ ଲେଖା ଚିଠିଟି କୋଠୀକମ ଚନ୍ଦନ ରଙ୍ଗ

କାଗଜ ଉପରେ ବିଛାଇ ଧରିଲେ । ପଢ଼ିଲେ । ନିରୋଳା ସ୍ନେହର, ନୂଆ ଚମକାନ୍ଧିଆ ରୋମାଞ୍ଚର ମହକ ଆସୁଥିବା ଛୋଟ ଚିଠିଟିଏ ସତୀଶଙ୍କୁ— ଶାନ୍ତୁର ସଜଳ ଦୃଷ୍ଟି ପରି, ସେଥିରେ ଫୁଲେଇପଣ, ଅଧାଛପା ଭାବ କିଛି ନାହିଁ । କଲେକ୍ଟର୍ ବୋଷ୍ ବାବୁଙ୍କ ପୁଅ ସତୀଶ, ଚଷମାପିନ୍ଧା ସୁନ୍ଦର ଆଖି । ହସୁ ହସୁ ଓଠ ବୁଜେ ବାହାଡ଼ା ଦାନ୍ତ ଲୁଚୁଇବା ପାଇଁ । ଏଇ ସେଦିନ ଯାଏଁ ଦୁହେଁ ସାଙ୍ଗ ହୋଇ ଖେଳୁଥିଲେ, ସେଦିନ ଯାଏଁ ଯେମିତି ଶାନ୍ତୁ ତା ସାନ ଡେସ୍କରେ ପାଠ ପଢ଼ୁଥିଲା । ଡେଙ୍ଗା ହୋଇ ଡେସ୍କକୁ ବଳେଇଗଲା ବୋଲି ବଡ଼ ଟେବୁଲ ଚଉକି ଅଣାଗଲା ତା ପାଇଁ, ଏଇଠି ତ ଝୁଙ୍କିପଡ଼ି ସ୍କୁଲ ପାଠ କରୁଥାଏ, ଅଙ୍କ କଷୁଥାଏ, ରଚନା ଲେଖୁଥାଏ ।

ପଢ଼ା-ଟେବୁଲରେ ମୁହଁ ମାଡ଼ି ଅଙ୍କ କଷୁ କଷୁ, ରଚନା ଲେଖୁ ଲେଖୁ ସୁଷମାଙ୍କୁ ବି ଅନ୍ୟ ମୁହଁ ଦିଶିଯାଏ । ଶେଷ ସ୍କୁଲ ଜୀବନରେ ସେଇ ସାବନା ଡେଙ୍ଗା ପିଲାଟି ଅରୁଣ । ସେ ଅଗତ୍ୟା ଫିକା ପଡ଼ିଆସିଲା ପରେ ପୁଣି ଥରେ ରବୀନ୍ଦ୍ର । ନା, ସେ କେବେ ପଢ଼ା ଟେବୁଲରେ ସ୍କୁଲ କଲେଜ ଖାତାରୁ ଫର୍ଦ୍ଦ ଚିରି ନାହାନ୍ତି—ଖାତା ଉପରେ ପୃଷ୍ଠା ନମ୍ବର ଥାଏ, ପ୍ରମାଣ କେଉଁଠି ନାହିଁ ? ବହି ଉପରେ ମୁହଁ ମାଡ଼ି ନିଜକୁ ବିଶ୍ୱାସ ଦେଇ ଆସିଛନ୍ତି—ଏ କିଛି ନୁହେଁ, ଭୁଲିଯିବ, ଯିବାକୁ ହିଁ ହେବ ତାକୁ । ଏ ହେବା କଥା ନୁହେଁ । ଏ ଡେଉ ବି—ଗତଥର ପରି ମୁଣ୍ଡ ପୋତି ଥା, ଗୋଡ଼ ସ୍ଥିର ଥାଉ ଭୂଇଁରେ ଜମା ନ ଘୁଞ୍ଚୁ, ନଇଁପଡ଼ି କୁଣ୍ଢେଇ ଧରିଥା ଆପଣାକୁ ।

ଶାନ୍ତୁ ଖେଳନା ସାଇତିବାକୁ ଦିଏ ନାହିଁ । ତା ଅଜାରେ ତାଙ୍କର ଭୟ ହୁଏ ଗୃହୁଁ ଗୃହୁଁ ସାଇତା ଖେଳନାମାନ ମରିଯିବେ ଶାନ୍ତୁବାବା । ତା'ପରେ ଶାନ୍ତୁ ଡରଡର, ଶାନ୍ତୁର ମୁହଁ ପୋତା, କାନ୍ଦ କୁନ୍ଦା । ଝିଅଟା ଆଗନ୍ତୁକଙ୍କୁ ଟ୍ରେ'ରେ ଚା' ଜଳଖିଆ ନେଇ ପରଷିବ, ସ୍ୱାମୀ ପାଖେ ଓଢ଼ଣା ଟେକିବ—ଜନ୍ମ ରାତିରେ ଲାଜମିଶା ଅନୁରାଗରେ ନୁହେଁ, ଟଙ୍କା ସ୍ୱାର୍ଥର ପଥର ଦୁର୍ଗ ଭିତରେ । ପଚିଶି ବର୍ଷ ହେଲାବେଳକୁ ଜୀବନର ସିଧା ପକ୍କା ରାସ୍ତା—ସେ ମୁଣ୍ଡରେ ଦିଶିଯାଉଥିବ, ଝିଅର ମ୍ୟାରେଜ୍ ପଲିସି, ପୁଅର

ଊନ ସ୍କୁଲରେ ପିଠ୍ । ବାପ୍, ଚେଉଁକ ଆଉ କହୁ ନାହିଁ । ମୋ ପର ଯେ ଗ ଭ୍ୟ ସ କର ଦେହ ସୁନ୍ଦର ରଖିପାରେ ।

ଗୀତୁ ଅଳି କରିବ—ନୂଆ କଷ୍ଟ୍ୟୁମ ଦେଇଦେ ମା, ମୁଁ ଖେଳିବ, ଗେଲ୍ କରିବ । ନ ହେଲେ କେବେ ଆଉ ଦେବୁ ? ଚିଠି ଲେଖିବ ମା ପ୍ଲିଜ୍ । କେବେ ଆଉ ଲେଖିବ ? ତୋ'ପର ସୁନ୍ଦରୀ ରହିବ, କଲେଜ୍ ଦେଖାଇ ସିଫନ ଶାଢ଼ୀ ପିନ୍ଧିବ, ହେଲେ ସପ୍ତାଶକୁ ଚିଠି ଲେଖି ଶେଷରେ 'ମାଇଁ ସୁଇଟେଷ୍ଟ କସେସ୍' ବୋଲି ଗୃହପାଞ୍ଚଠା । ନାଲଛ ତାଗ ଚନ୍ଦ୍ର ଆଉ କେବେ ଦେଇପାରିବ ?

ଗୀତୁର ସମବୟସୀ ପାଲଟି ଯାଆନ୍ତି ଆଉ ଏମିତି ଚିଠି ସହିତ ଗ୍ରାଇଟିଂପ୍ୟାଡ ତା' ପଢ଼ା ଟେବୁଲ ଉପ୍ପରରେ ଥୋଇ ଦିଅନ୍ତି । ସେ ଖୋଲ ଦୋଦୋପାଞ୍ଚ ହାତକୁ ନେଲଷଣି ପଛ ପାଖରୁ ଟମକାଇ ନେଇ ତା' କାନ୍ଧ ଉପରେ ହସି ହସି ଲେଟି ଯାଆନ୍ତି ।

ବାହାରେ ଗାଡ଼ି ହର୍ଣ୍ଣ ଶୁଭିଲା । ସୁଷମା ବାହାର ବାରଣ୍ଡାରେ । ରବିବାବୁ ଗାଡ଼ି ବୃକ ଘୂରେଇ ଘୂରେଇ ବାରଣ୍ଡା ଉପରକୁ ଉଠିଲେ, କହିଲେ—କହ କହ ରଘୁକୁ ବାଢ଼ୁ, ଖ୍ୟଷଣ ହେକ । ରହିଯାଇ ପେପର ଉଠାଇ ଆଖି ବୁଲେଇଗଲେ ଠିଆ ଠିଆ । ତା'ପରେ ଚରବରରେ ପେପର ଥୋଇ ପଚାରିଲେ—'ତମ ବନ୍‌ସ ଇ କେତେଦୂର ଗଲା ? ଆମ କାକ୍‌ଟସ୍‌ଗୁଡ଼ା କନ୍ତୁ ଚମତ୍କାର ହେଇଚ, ଆଉ କାହା ଘରେ ଏତେ ଆର୍ଟିଷ୍ଟିକ୍ ହେଇନ ।'

ବାରଣ୍ଡାର ବାହାର ପାଖ ଧାରକୁ ଲମ୍ବ, ଡଙ୍ଗା ପରି କୁଣ୍ଡରେ ବିଭିନ୍ନ ରକମର ସାନ ସାନ ନାଗଫେଣୀ, ତା' ମୂଳରେ ମାଟିସାର ଢାଙ୍କି ଦେଇ ବଛେଇ ଦିଆଯାଇଚ ଗୋଲ ବାଲିଗରଡ଼ା—ମାଟିଆ, ପାଉଁସିଆ, ଧଳା । ସୁଷମାଙ୍କ ହାତର କାରିଗରୀ । ଗଛମାନ ସତେ କ କଣ୍ଟାଅର ହେଇଚ, ଦେଖିଲେ ବିଶ୍ୱାସ ହେଉନ, ସେଥିରୁ ଚେର ଯାଇ ସୁନ୍ଦର ସଜା ପଥରଡକୁ ମାଟିରୁ ରସ ଟାଣି ଖାଇଚ ବୋଲି ।

ସୁଷମାଙ୍କ ବିଶ୍ବାସ ଫେରି ଆସୁଚି, ଗୋଡ଼ ଥାପି ହୋଇଯାଉଚି ମାଟିରେ । ରବି ବାବୁଙ୍କ ପଛେ ପଛେ ଘର ଭିତରକୁ ପଶି ଆସୁ ଆସୁ ତ ଙ୍କୁ ବାଟ ଦିଶିଯାଉଚି । ସ୍ୱାମୀଙ୍କୁ ଉପରୁ ଆସନରୁ ଶାସନ କରିବା ଦରକାର ନାହିଁ, 'ତା' ପାଖରେ ବସି ସେ ତା' ମନ ଖୋଲିଦେବେ, ତା' କଥାକୁ ମାନିନେଇ ଆପଣା ଲୋକର ବିଶ୍ୱାସ ଦେବେ, ତା'ପରେ ହାତ ଧରି ବାଟ ବତେଇ ଦେବେ—ସ୍ନେହକୁ, ବନ୍ଧୁତାକୁ କିଏ ବାଟ ଓଗାଳିବ ? ତେବେ ମା' ସ୍ନେହ କ ବନ୍ଧୁତାରେ ତ ଜୀବନକୁ ଉଜାଡ଼ି ଦେଇ ହେବ ନାହିଁ । ତୋ' ଜୀବନ ପାଇଁ ଯାହା କିଛି ସାଇତିବୁ ତୁ ନିଜେ ।

ଖାଇବା ଆରମ୍ଭ କରି ରବିବାବୁ ପଚାରିଲେ—"ତମେ ଖାଇବନି ?"

ସକାଳୁ ଉପାସରେ ଅଛନ୍ତି ସୁଷମା, ଗରମ ଭାତ ତରକାରୀର ବାସ୍ନା ଖେଳେଇ ହୋଇ ଯାଉଚି ଘରସାରା । ହସି କହିଲେ—"ମୋର ବ୍ରତ ଆଜି । ପରେ ଖାଇବି, ସାତ୍ତ୍ୱିକ ଖାଦ୍ୟ !"

—"ବଡ଼ ରିଲିଜିୟସ୍ ହେଲଣି ପୁଣି ।"

'ପୁଣି'ର ମର୍ମ ହେଲା, କିଛି ବର୍ଷ ତଳେ ଦୁହେଁ ଯୋଗାଭ୍ୟାସ ଓ ଧ୍ୟାନ ଶିଖିଥିଲେ, ଅଭ୍ୟାସ ଛୁଟିଗଲା—ପ୍ରଥମେ ରବି ବାବୁଙ୍କର, ତା' ପରେ ସୁଷମାଙ୍କର । ରବି ବାବୁ ପୁଣି କହିଲେ—"ହେଲେ ବ୍ରତ କଲ ଯଦି, ଚିହ୍ନା ବ୍ରତ ଉପାସ ଛାଡ଼ି ଏ ନୂଆଟା ଗୋଟିଏ ଧରିଲ କେମିତି ?"

ସୁଷମାଙ୍କର ମନେ ପଡ଼ିଲା ଲେଡ଼ିଜ୍ କ୍ଲବ୍‌ରେ ବିଭିନ୍ନ ନାରୀମାନଙ୍କ ଏଇ ବ୍ରତର ଫଳ ଲାଭ ବିଷୟରେ ବିଭିନ୍ନ ଅନୁଭୂତିମାନ କଥା । କହିଲେ —"ଠାକୁର ପୂଜା ତ ସେଇ, ନୂଆ ଆଉ କ'ଣ । ଯେଉଁ ରାସ୍ତା ମନକୁ ରୁଚିଲା, ସେଇ ଆକାରରେ ଭଗବାନଙ୍କୁ ଡାକିବା କଥା ।"

ରବି ବାବୁ ହୋ ହୋ ହସିଲେ ଅକାରଣ ।—"ନୂଆ ବାହାନାରେ ପୁରୁଣା ରାସ୍ତା, କ'ଣ କହୁଛ ? ନୂଆ କିଛି ଖୋଜୁଥିବ,

ନୂଆ ଆଳରେ ପୂଜାଘଣ୍ଟ ଗୁଡ଼ାଏ ପୁଣି ମାନବ—ତା’ ପରେ ନିଜକୁ ସୁନ୍ଦରଇଲା ପରି ଯୁକ୍ତି କରବ । କ’ଣ ଖଟା ଖାଇବା ପରା ମନା ଏ ବ୍ରତରେ ?”

—“ଥଟ୍ଟା କରନା । ଆମର ତ ସବୁ ବ୍ରତରେ ଏମିତି ମାନ୍ତ ନିୟମ ଥାଏ । ନିଷ୍ଠା, ତ୍ୟାଗ, ସଂଯମ ଶିଖିବା ଲାଗି ସେସବୁ ।”

ସୁଷମାଙ୍କୁ ଗମ୍ଭୀର ଦେଖି ରବି ବାବୁ ଆଉ ଥଟ୍ଟା କଲେ ନାହିଁ । ପାଣି ପିଇବାକୁ ଯାଇ ଦେଖିଲେ ଗିଲାସ ଖାଲି, ଟେବୁଲର ପାଣି ଜଗ୍ ବି ଖାଲି । ସୁଷମା ଅନ୍ୟମନସ୍କ । ନିଜେ ଉଠି ବାଁ ହାତରେ ଫ୍ରିଜ୍ ଖୋଲିଲେ ଓ କହିଲେ—“ସୁଷମା, ବଡ଼ ଗନ୍ଧ ହେଲାଣି ଫ୍ରିଜ୍‌ଟା ।”

ସୁଷମା ଶୁଙ୍ଘିଲେ—ଖୋଲା ଫ୍ରିଜରୁ ଆମ୍ବିଳିଆ ପଚା ଗନ୍ଧଟିଏ ଖେଳେଇ ହୋଇ ଆସୁଚି ପଙ୍ଖା ପବନରେ ।

ସୁଷମା ବିହ୍ୱଳ ଚକିତ ହେଲା ପରି ପଚାରିଲେ—“କୋଉଠୁ ଆସୁଚି ଏ ଗନ୍ଧ ?”

—“ତମ ଫ୍ରିଜରୁ, ଆଉ କୋଉଠୁ ?” ରବି ବାବୁ ଏଥର ଥଟ୍ଟା ସମ୍ଭାଳି ପାରିଲେ ନାହିଁ—“ତମ ହାଉସ୍-ହୋଲଡ଼ ଟିପ୍‌ସ ଲେଖା ମୋଟା ଖାତାଟି କୁଆଡ଼େ ଗଲା ?”

ବିରକ୍ତିଆ ଗନ୍ଧ ନାକରେ ବାଜୁଚି, ଅପମାନ ଲାଗୁଚି । —“କାହିଁକି ମୋତେ ଦୋଷ ଦିଅ ସବୁ କଥାରେ ?”

—“ଆରେ ବାବା ଦୋଷ ନୁହେଁ, ଦୋଷ ନୁହେଁ । ମୋର ଚିନ୍ତା ହେଲା ଏ ଆମ୍ବିଳା ଗନ୍ଧରେ ତ ଦେହ, ମନ ଭରିଗଲା, ଆଉ ତମର ଶୁକ୍ରବାର ବ୍ରତ ହେବ କ’ଣ ?”

ସ୍ୱାମୀ ଚାଲିଯାଏଁ ସୁଷମା ବସି ରହିଲେ । ତାଙ୍କ ଚଣ୍ଡି ଆରପାଖେ ଏତେ ଗରମ ବାମ୍ପ ଯେ ଆଖି ପଡ଼ିଲେଇ ଧୂଆଁ ଗୋଡ଼ ଉଠୁଚି, ଓଠେ ଶବ୍ଦ ଆସିବା ପାଇଁ ସବୁ ରାସ୍ତା ବନ୍ଦ । ନ ରହୁ ଶୁକ୍ରବାର ବ୍ରତ । କାହାଲାଗି ମୁଁ

ମାନସିକ କରଚ, କାହାଲାଗି ଏତେ କଥା ସତେଜ ସବୁଜ କରି ସାଇତି ରଖୁଚ ? ମୁଁ ହିଁ ଦାୟୀ ହେବ, ତମ ଅଧାକୁ ଜଗୁଥିବ ?

ରଘୁ ଆସି ଟେବୁଲ ପୋଛିଲା । ସୁଷମାଙ୍କ ନିଜ ହାତ ତିଆରି ସାତ୍ତ୍ୱିକ ଆହାର ଆଣି ରଖିଲା । ସୁଷମା ଢାଙ୍କୁଣୀ ଖୋଲିଲେ, ତୀକ୍ଷ୍ଣ ସ୍ୱରରେ ପଚାରିଲେ—"ଏଥିରେ ହାତ ମାରିଥିଲୁ ? ଢାଙ୍କୁଣୀ ଖୋଲି-ଥିଲୁ ?"

"ନାଇଁ ତ ମା ।"

"ନାଇଁ ତ ଏ ଗନ୍ଧ ଆସୁଚି କେଉଁଠୁ ? ଅଳସୁଆ ଠକ, ଆଜ ସକାଳୁ କି କାମ ସବୁ କରିପକେଇଚୁ ଶୁଣେ ?"

କେତେବେଳ ଭଲ ଭୁଲ ରହିଥିବ ମୁଁ ? ଶବ୍ଦମାନ ଏଥର ସଳଖ ସ୍ରୋତରେ ବହି ଆସୁଚନ୍ତି । ରଘୁ କେତେବେଳୁ ବାରିପାଖେ ଅଦୃଶ୍ୟ ହେଲାଣି । ତା ମନ ହେଲେ ଯାଉ କାମଛାଡ଼ି, ମୁଁ ଡରି ନାହିଁ । ତାଙ୍କ ତଣ୍ଟି ଝିନ୍ ଝିନ୍ ଲାଗି ଦେହଯାକ ଝାଳ ଫିଟିଆସିଲା । ଗଳା ଶୁଖିଯାଇ ପୋଡ଼ି ଉଠୁଚି, ଅଭ୍ୟାସବଶତଃ ସେ ଫ୍ରିଜ୍ ଖୋଲିଲେ ପାଣି ଲାଗି ଓ ଦେଖିଲେଣି ଆମ୍ବିଳିଆ ମହକଟି ତାଙ୍କ ନାକରେ ବାଜିଲା ଓ ଗୃହ୍ମଁ ଗୃହ୍ମଁ ତାଙ୍କ ଦେହଯାକ ଆଉଁସି ତାଙ୍କୁ ନଇଁମେଇ ଦେଲା । ସ୍ୱଗର ତେଜ ମଉଳି ଯାଇ ସେ କୁଙ୍କୁରି ଗଲେ ଓ ସେଇଠି ଗୋଡ଼ ଭାଙ୍ଗି ବସି ପଡ଼ିଲେ ଖୋଲା ଫ୍ରିଜ୍ ତଳେ । କୋଉଠୁ ଆସୁଚି ଏ ଗନ୍ଧ ? କେଉଁ ସଯତ୍ନେ ସାଇତା ଖାଦ୍ୟରୁ, କେଉଁ ଚକ୍ ଚକ୍ ବାସନର ଶଚା ଘୋଡ଼ଣୀ ଠେଲି, କେଉଁ ସବୁଜ ପରିବାର ମଞ୍ଜି ଭିତରୁ ? ଖଟା ଗନ୍ଧ ନାକବାଟେ ଯାଇ ଆଉଁଟି ଦେଉଚି ପେଟ ଭିତର, ସୁଲୁସୁଲେଇ ଦେଉଚି ଦାନ୍ତମୂଳ, ପାଚକ ରସ ଝରି ପାଟି ଭିତରଟା ସାଗ୍ରଟା । କେଉଁ ଛଟକରେ ପଶିଲା ବାହାରର ଉଷ୍ମ ପବନ ଭିତରକୁ । ଭିତରର ଥଣ୍ଡା ତାଙ୍କୁ ଆବୋରି ପକାଉଚି, ନିଜ ଭିତରକୁ ଟାଣି ନେଉଚି ।

ସେ ଜାଣନ୍ତି ସେ ଲଢ଼ିବେ, ଲଢ଼ି ପାରିବେ । ଭିତର ଅଣ୍ଡାକୁ ବଞ୍ଚେଇ ରଖିବେ, ବାହାରର ଉଷୁମ ଜୀବାଣୁ ଦାଉରୁ । ତଥାପି ନିଜକୁ ସମର୍ପି ଦେଇ ସେ ବସି ଥାଆନ୍ତି ଅଣ୍ଡା ଗରମ ହାବୁକାମାନଙ୍କ ଭିତରେ —ଆମ୍ବିଳା ପରି ମହକ ଭିତରେ ଦେହ ଗୋଟା ଓ ମୁହଁ ଜଉଟି ଡୁବେଇ ଦେଇ ।



# ପିକ୍‌ନିକ୍

ଶାନ୍ତା ଅନେଇଥାଏ ଫେଣେଇ ଉଚ୍ଛୁଳ ଭଉଁରି ଖାଉଥିବା ଗୋଳପାଣିକୁ । ବଡ ବଡ଼ ଛିଟ ଫୁଲର ନୂଆ ମେକ୍ସିଠାକୁ ପବନ ଉଡେଇ ଦେହରେ ଲେପ୍ଟେଇ ଦେଇଥାଏ । ତା' ଖାଲପାଦତଳେ ଚକ୍‌କଣିଆ ଓଦାମାଟି—ଚପଲ ସେ ଛାଡ଼ିଆସିଚି ଡାକବଙ୍ଗଳା ହତାପାଖେ, ସେଇଠୁଁ କାଦୁଅ ଆରମ୍ଭ । ଶାନ୍ତାର ନିଃଶ୍ୱାସ ଆସୁଥାଏ ଟିକିଏ ଅଧିକ ବେଗରେ—ଛାତିଟା ପଡ଼ୁଥିବା ଉଠୁଥିବା ସେ ଅନୁଭବ କରିପାରୁଥାଏ । ଟିକିଏ ଆଗକୁ ବନ୍ଧ—ବଢ଼ି ପାଣିକୁ ଆକଟି କାକୁସ୍ଥ ଉଦ୍‌ବେଗରେ ଠିଆ-ହୋଇଚି । ଆଉ ଏଇ ପାଦତଳକୁ ଗୋଳପାଣି ଫେଣ ଉଦ୍‌ଗାରି ସୁଁ ସୁଁ ହେଉଚି—କେତେକାଳର ଆକ୍ରୋଶ ଆଉ ରୁନ୍ଧା ନ ପଡ଼ିଲା ପରି କୂଳର ପଥରବନ୍ଧ ଦେହରେ ଗୁଡ଼େଇ ଭୁଡ଼େଇ ପିଟି ହେଉଚି ।

ମୁନା—ଶାନ୍ତାର ତିନିବର୍ଷର ପୁଅ—ଆପଣା ମନକୁ କଥା କହୁ କହୁ ଚଳୁ କାଦୁଅ ଗୋଡ଼ ଉଠାଉଛି । ବାଁ ହାତରେ ଗୋଡ଼ିଟିଏ ଥୋଇ ଡାହାଣ ଆଙ୍ଗୁଠିଯାକ ତା ପରିଷ୍କାର ଜାମାରେ ପୋଛୁ ଦେଉଥିବା ଦେଖି ବି କିଛି ଆକଟି କହି ମୁନାର ମନ ଭାଙ୍ଗିଦେବାକୁ ଶାନ୍ତାର ଇଚ୍ଛା ହେଲାନାହିଁ ।

ଟିକକରେ ପଛରୁ କାହାର ଆସିବା ଶୁଭିଲା । କାଟକାନ୍ଥକୁ ଠେକା ମାରିଲା ପରି ଚପରାଶୀ କହିଲା—ସାହେବ ଖବର ପଠେଇଚନ୍ତି, ତାଙ୍କର ଆସୁ ଆସୁ ଡେରିହେବ । ଆପଣ ଖାଇନେବେ ବୋଲି କହିଚନ୍ତି ।

ଶାନ୍ତା ମୁହଁ ଫେରେଇ ପୁଣି ସାମ୍ନାକୁ ଚାହିଁଲା, କିନ୍ତୁ ତା ଦୁଇ ଭ୍ରୂ ମଝିରେ ଗାର ପଡ଼ିଯାଇଥାଏ, ଦୃଶ୍ୟ ଚଞ୍ଚଳ ସରିଥାଏ । ତେଣୁ ସେ ଫେରିପଡ଼ି ମୁନା ଆଡ଼କରେ ନିଜକୁ କହିଲା—ଚାଲ ମୁନା ଖାଇନେବା, ବିନ ଯାକ ତ ପଡ଼ିଚି ବୁଲିବାକୁ । ଦୁହେଁ ସରୁ ଜଙ୍ଗଲି ରାସ୍ତା ଦେଇ ଫେରିଲେ । ମୁନା ଓଦା ଶକ୍ତ ମାଟି ଉପରେ ସାବଧାନରେ ପାଦ ପକାଇଲା ବେଳକୁ ଉଲ୍ଲାସ-ଗର୍ବରେ ଶାନ୍ତା ମୁହଁକୁ ଚାହୁଁଥାଏ, ଆଉ ମୁନାର ହସ ଫେରାଉ ଫେରାଉ ଶାନ୍ତାର ସନ୍ତର୍ପଣ ଦୃଷ୍ଟି ଚାଲିଯାଉଥାଏ ନୂଆ ପୋଷାକଟି ଆଲିଙ୍ଗି ଧରିଥିବା ନିଜ ଦେହ ଆଡ଼େ ।

ଡାକବଙ୍ଗଳା ହତା ଭିତରକୁ ପଶୁ ପଶୁ ଶାନ୍ତାର ନଜର ପଡ଼ିଲା ଜନ୍ ଉପରେ—ଗୋଲାପ କୁଣ୍ଡମାନଙ୍କରେ ମାଟି ଖୋଷୁଥାଏ । ଜନ୍ ମୁହଁ ଟେକି ଶାନ୍ତାକୁ, ତା ହାତରେ ଚପଲ ଓ କାଦୁଅ ପାଦକୁ ଚାହିଁ ହସିଲା ତା ଅସମାନିଆ ଦାନ୍ତରେ, ପାଚିଲା ଭୃଲତା ଟେକି ଜାଣିଶୁଣି ଖଟେଇ ହେଲାପରି ଢଙ୍ଗରେ କହିଲା ଏତେ ଶୀଘ୍ର ତମ ବୁଲା ସରିଗଲା ? ଶାନ୍ତା ସାବଧାନ ଇଂରାଜୀରେ ଉତ୍ତର ଦେଲା—ସରିଲା କୋଉଠି ? ମୋ ବୁଲା ତ ଆରମ୍ଭ ହୋଇନି ।

ଏଠିକି ଆସିବା ଆଗରୁ ମହେଶ ଏଇ ବ୍ୟକ୍ତିଟି ବିଷୟରେ କହିଥିଲା ଶାନ୍ତାକୁ, ଆଉ ଜନ୍‌ରୁ ଓଲ୍ଡ଼େଇଲାମ ନେ ଚିଠ୍ଠେଇ ଦେଇଥିଲା । ଜନ୍ ଏଠିକା ବଗିଚାର ମାଳୀ—ପ୍ରଧାନ ମାଳୀ—କାଳେ ଖାଣ୍ଟି ଇଂରେଜ, ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳୁ ରହିଯାଇଚି । ଅନେକ କହନ୍ତି ସେ ଖାଣ୍ଟି ଇଂରେଜ ନୁହେଁ, ଆଙ୍ଗ୍ଲୋଇଣ୍ଡିଆନ୍ କମ୍ଭା ଗୋଆନିଜ୍ । ଅସୁସ୍ଥତା ରୁ ପ୍ରଥମେ ରହିଗଲା, ତା'ପରେ କେଉଁ ଗୋରା-ସାହେବ ତାକୁ ଏଠି ମାଳୀ କାମରେ ଲଗେଇ ଦେଲା । ଜନ୍ ଶାନ୍ତାକୁ କହିଲା—ଏଠି ପହିଲେ ଦେଖିବା ଜିନିଷ ହେଲା ଏ ବଗିଚା । ତମେ ଆଗକରି ନଯାଆଡ଼େ ଚାଲିଗଲ ଯେ ?

ତା'ପରେ ସହଜ ଗଳାରେ ଚପରାଶୀକୁ କହିଲା—ଖାଇବା ଗରମକରି ଟେବୁଲରେ ରଖୁଥାଅ, ମେମ୍‌ସାହେବ ବଗିଚା ଦେଖିସାରି ଯିବେ ।

ମୁନା କାଖ ହୋଇ ଭିତରକୁ ଚାଲିଗଲା, ଆଉ ଶାନ୍ତା ପୁଣି ତା ଚପଲ ସେଠି ପକାଇଦେଇ ନିର୍ବାଦରେ ବଗିଚା ଦେଖାରେ ଲାଗିଗଲା ।

ଜନ୍ ପଡ଼ିଲା, କିନ୍ତୁ ବେଶ୍ ସିଧାସଳଖ ବୁଢ଼ାଟିଏ । ବଗିଚାର ମାଟିକାମ ଓ ଖରାଧାସରେ ତା ସାହେବ ରଙ୍ଗ କଷରା ପଡ଼ିଗଲାଣି, ପାଣିଚିଆ ନୀଳ ଆଖି, ଫାଙ୍କ ଫାଙ୍କ ଅସମାନିଆ ଦାନ୍ତ । ପୁରୁଣାକାଳ-ସାର୍ଟକୁ କହୁଣୀ ଉପରଯାଏ ମୋଡ଼ିଛି, ଅଧାମୁଣ୍ଡ ଯାଏଁ ମାଡ଼ିଯାଇଥିବା କପାଳ ପଛକୁ ମଇଳା ପଛକୁ ମଇଳା କପା ପରି ବାଳ । ପରିଷ୍କାର ଇଂରେଜୀ କହୁଥିବା ଯୋଗୁଁ, ତଥା ସ୍ୱୟଂ ଇଂରେଜ ବୋଲାଉଥିବା ଯୋଗୁଁ ସ୍ୱାଭାବିକ ଭାବେ ଜନ୍‌ର ଏକ ନିଜସ୍ୱ ପରିଚୟ ତଥା ସମ୍ମାନ ଥାଏ । ସବୁ ଅଫିସର ଏଠିକି ଆସିବା ଆଗରୁ ତା ବିଷୟରେ ଶୁଣି ସାରିଥାନ୍ତି, ତଥା ଆସିଲାଣି ଏକ ଆରେକକୁ ଜନ୍ ସଙ୍ଗେ ପରିଚୟ କରିଦିଅନ୍ତି [ ଡାକବଙ୍ଗଳାର ଅନ୍ୟମାନେ କେବଳ ଚପରାଶୀ ବା ମାଳୀ ବୋଲି ଉଦାହୃତ ହେଉଥିବା ସ୍ଥଳେ ] । ସେ ବି ସ୍ୱଚ୍ଛନ୍ଦରେ ଡାକବଙ୍ଗଳାର ସୋଫା ଉପରେ ବସି ଅନ୍ୟବାବୁମାନଙ୍କ ସହିତ ଚା ପିଏ, ଓ ଅନ୍ୟ ଚପରାଶୀମାନଙ୍କୁ ଅର୍ଡ଼ର ଦିଏ ।

ମହେଶ ଶାନ୍ତାକୁ ଜନ୍ ସଙ୍ଗେ ପରିଚୟ କରିଦେଇଥିଲା ପ୍ରାୟ ସେ ଜଣେ ସମ୍ମାନାସ୍ପଦ ବ୍ୟକ୍ତି ଭଳି ଓ ଶାନ୍ତା ଅନେକଦିନ ପରେ ପୂରା ଇଂରାଜୀରେ କଥା କହିଲାବେଳକୁ ଟିକିଏ ଥତମତ ହେଇଯାଉଥାଏ । ସେମାନଙ୍କ ସହିତ ଚା' ପିଉ ପିଉ ଜନ୍ ସେ ଅଞ୍ଚଳର ଅଫିସର୍ ତଥା ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ସମ୍ବନ୍ଧରେ ନିଶ୍ଚିନ୍ତରେ ମନ୍ତବ୍ୟ ଦେଉଥାଏ ।

ଜନ୍ ଶାନ୍ତାକୁ ସାଙ୍ଗରେ ନେଇ ତା' ବଗିଚାର ଦେଶୀ ବିଦେଶୀ ଫୁଲମାନ ଦେଖାଇ ସେମାନଙ୍କ ନାମ ଓ ଖ୍ୟାତିର ପରିଚୟ ଦେଉ-ଥାଏ । ଇଏ ଦେଖ ଗୋଟେ ରକମ ମନ୍ଦାର, ଆଗରୁ ଦେଖିଛ ? ଗୋଲାପି ମନ୍ଦାର ମଝିରେ ଖଇରିଆ ବୃନ୍ତ ଓ ବୃନ୍ତ । ଆଉ ଦେଖ ଏ ଗୋଲାପ, ସ୍ୱା ନା ସନସେଟ ଗ୍ଲୋରି···

ଲନ୍‌ର ଘାସ ସଙ୍ଗେ ବି ପରିଚୟ କରେଇଦେଲା ଜନ୍—କେନିଆ ଗ୍ରାସ୍ । ଏତେ ସୁକୁମାର ଯେ ଦୁବଘାସ ବି ଯଦି ତା' ପାଖେ କଅଁଳିଲା

ସେ ଉଠେଇବନି । ଶାନ୍ତା ଘାସ ଉପରେ ଗଳୁ ଗଳୁ କହିଲା—ଉଃ, କାର୍ପେଟ୍ ପରି ସତରେ । ଟିକେ ବସିବ ?

ଜନ୍ ଖୁସିରେ ହସିଲା ପ୍ରାୟ ଅଟ୍ଟହାସ କଲାଭଳି । କହିଲା—ଏତେ ଲୋକ ଆସନ୍ତି ଏଠିକି, କିନ୍ତୁ ମୋ ପରିଶ୍ରମ ବୃଥା ଯାଏ, ସମସ୍ତେ ଆସନ୍ତି ଖାଲି କାମରେ ଅବା ବେଶୀରେ ତରବରିଆ ଟିକେ ଦେଖି ଦେଇଯିବେ ଉପରଠାଉରିଆ । ତମପରି ସୁନ୍ଦରୀ ଝିଅମାନେ ଆସି ମୋ ବଗିଚ୍ଚୁ ଧନ୍ୟ କରିବା କଥା ।

ମଜାଳିଆ ଲୋକଟିଏ ଜନ୍—ଶାନ୍ତା ହସିଲା । ଘାସରେ ବସି ନିଜ ଘୃରପାଖେ ମେକ୍ସିଟିର ସୁନ୍ଦର ଘେର ଖେଳାଇଦେଲା ଜନ୍ କହିଲା—ଏଇ ଡ୍ରେସ୍‌ଟି ତମକୁ ମାନୁଚି ସକାଳର ଶାଢ଼ୀ ଅପେକ୍ଷା । ଶାଢ଼ୀରେ ସମସ୍ତେ ବଡ଼ ଗମ୍ଭୀର ଆଉ ବୟସ୍କ ଦିଶନ୍ତି । ଝିଅମାନେ ଏତେ ଗମ୍ଭୀର ଦିଶିବା କଣ ଦରକାର ?

ଶାନ୍ତା ଆହୁରି ଥରେ ହସିଲା, ଉଠୁ ଉଠୁ କହିଲା—ହଉ, ଯାଉଚି । ଖାଇବାକୁ ।

ମେକ୍ସିଟି ଶାନ୍ତା କିଣି ଆଣିଥିଲା କେତେଦିନ ତଳେ । ସେଦିନ ଅନାହୂତ ନୂଆ କାମଟାଏ କରିପକେଇ କେମିତି ମହେଶକୁ ମୂକ ବନା କରିବ ନିଜକୁ ସଜଉଥାଏ । ଭିତରେ ମଶାରି ଟାଣୁ ଟାଣୁ—ମହେଶ ପଚାରୁଥାଏ କ'ଣଟାଏ—ଶାନ୍ତା ବିଁରେଇ ବାଁରେଇ ନୂଆ ଜିନିଷଟିଏ କିଣିଥିବା କଥା ପକେଇଲା । ନୂଆ ଡ୍ରେସଟିଏ···ତମେ ହସିବ କି ରାଗିବ ଜେଜାଣି···ରାଣ ଅଛି ମିସେସ ଜୋନ୍ ବାଧ୍ୟକଲା···(ଅପ୍ରସ୍ତୁତ ହସ) ତମେ ମୋତେ ଫୁଲେଇ ବୋଲି କହିବ—କିନ୍ତୁ ସେ କହିଲା ମୋ ଫିଗର୍‌କୁ କାଳେ ମାନିବ···। ଶେଷରେ ପଡ଼ୁଥିବା ବନ୍ଧିଟି ଥୋଇଦେଇ ମହେଶ କହିଲା—କି' ଜିନିଷଟାଏ ? କ'ଣ ବିକିନ ଟାଏ । କିଣି ପକେଇଛ ନା କ'ଣ ? ଶାନ୍ତା ଏକଥାରେ ବୁହେ ହସିଗଲା ।

ବଡ଼ବଡ଼ ଫୁଲ ଛିଟରେ ଲମ୍ବା ଜାମାଟା ଦେଖାଇଲାବେଳେ ଶାନ୍ତା ମୁହଁକୁ ଯିଏ ସେଦିନ ଦେଖିଥାନ୍ତା, ଭାବିଥାନ୍ତା ଫୁଲ ଭର୍ତ୍ତି ପାର୍କଟିରେ ସ୍କୁଲପିଲାଟିଏକୁ ଛାଡ଼ିଦେଇଚି କି କିଏ ଛୁଟିଦିନରେ । ମହେଶ ପ୍ରଶଂସା କଲା,

ଓ ଶାନ୍ତା ଅନୁମାନ କରିଥିବା ଜଣା ପ୍ରଶ୍ନଟି ପଚାରିଲା : ମାନେ ଡ୍ରେସ୍‌ଟା କିଣିଲ ଯେ, ଏଠି ଏମିତ ପିନ୍ଧୁ ଚନ୍ତି ନା କଣ ସ୍ୱତନ୍ତ୍ର ଲେଡ଼ିଜମାନେ ?

ଶାନ୍ତା ପ୍ରସ୍ତୁତ ଉତ୍ତର ଦେଲା···କାହିଁ, ସେଦିନ ସିନେମାହଲରେ ମିସେସ୍ ବୋସ୍‌କୁ ଦେଖିନ ? ମିସେସ୍ କପୁର ତ ଜିନ୍ ଆଉ ସାର୍ଟ୍ ବି ପିନ୍ଧେ ।

ମହେଶ କେବେ ଶାନ୍ତାକୁ ଆଘାତ ଦେବାକୁ ଚାହେଁ ନାହିଁ, ଏ କଥା ଶାନ୍ତା କ'ଣ ଯାଇପଡ଼ିଶା ବି ଲକ୍ଷ୍ୟ କରିଥିବେ । ବାସ୍ତବରେ ମହେଶ କାହା ଦେହରେ ଟିପ ମାରିଲା ସ୍ୱଭାବର ନୁହେଁ—ଶାନ୍ତା ଲକ୍ଷ୍ୟ କରିଚ ଗହଳ ଭିତରେ ବି ସେ ଏଣୁ ବଙ୍କେଇ ତେଣୁ କାନ୍ଧ ଆଡ଼େଇ ବାହାରିଯିବ ଯେ କାହା ଦେହରେ ଟିକଏ ଲାଗିବ ନାଇଁ ।

ଖାଇସାରି ଶାନ୍ତା ରୁମ୍‌କୁ ଆସିଲା । ଡାକବଙ୍ଗଳାରେ ଆଉ କେହି ନ ହାନ୍ତି—ବନ୍ଧ ଓ ନାଳ କାମରେ ଲାଗିଥିବା ଇଞ୍ଜିନିୟରଙ୍କ ଛଡ଼ା କ୍ୱଚିତ୍ ଲୋକ ଆସନ୍ତି ଏଠିକି । ମୁନା ବିଛଣାରେ ପଡ଼ି ବକର ବକର ହେଉଚି, ଶୋଇବାର ନାଁ ଧରୁନି ।

ଶାନ୍ତାର ନୂଆ ଡ୍ରେସ୍ ଦେଖିଲାପରେ ତାକୁ 'ଟିକଏ ପିନ୍ଧିଲ ଦେଖି' ବୋଲି ଅବଶ୍ୟ କହିନଥିଲା ମହେଶ । ତେବେ ସେଇ ରାତିରେ ବହୁତ ପ୍ରେମରେ କହିଲା—ତମକୁ କେତେଦିନୁ କୁଆଡ଼େ ଟିକେ ବୁଲେଇବାକୁ ନେଇପାରୁନି ଶାନ୍ତା; ନାଳ କାମ ତ ଦିନରାତି ଚାଲିଚି ଦେଖୁଚ, ଏଣେ ବର୍ଷାଟା ବି ହେବାକୁ ଥିଲା । ଭାବୁଚି ଏଇ ଗୁରୁବାର ଝୁମ୍‌କା ଗେଷ୍ଟ ହାଉସ୍‌କୁ ଯିବା । ମୋର କାମ ବି ହେବ, ସେ ଦିନଟା ପୂରା ରହିବା, ପିକ୍‌ନିକ୍‌ଟାଏ ହେଇଯିବ ଆମର ।

ଶାନ୍ତା ଖୁସି ଓ ଆଶ୍ଚର୍ଯ୍ୟ ହେଇ ପଚାରିଲା—ଗୁପ୍ତା ବାବୁ କଣ ମନେ କରିବେନି, ଏମିତି କାମବେଳେ ମୋତେ ସଙ୍ଗରେ ନେଇଗଲେ ?

ମହେଶ ସଦର୍ପେ ହସିଲା, ଶାନ୍ତାକୁ ପାଖକୁ ଟାଣି କହିଲା— ଭାବିଲେ ଭାବନ୍ତୁ । ମଣିଷ ଚାକିରି କରିବ ବୋଲି କଣ ଫେମିଲି ଲାଇଫ୍ ବୋଲି କଣ୍ଟ ନାହିଁ ?

ଶାନ୍ତା ନିଜର ପ୍ରାପ୍ୟ ଉଚ୍ଛ୍ୱସିତ ବାକ୍ୟଟି ମହେଶ ମୁହଁରୁ ଶୁଣି ହସିଲା—ମହେଶ ବି ହସିଲା—ସମ୍ଭାବ୍ୟ ପିକ୍‌ନିକ୍‌ଟିଏର ଆଶା ଦୁହିଁଙ୍କ ହସକୁ ଆହୁରି ଧାପେବାଟ ଗଡ଼ାଇନେଲା ।

ପରଦିନ ସକାଳୁ ଗୁରୁବାର ପହଞ୍ଚିବାଯାଏ ଶାନ୍ତାକୁ ଘର ଭିତର ସେତେ ଆଉ ରୁନ୍ଧ ହେଲାଭଳି ଲାଗିଲା ନାହିଁ କି ରନ୍ଧାବଢ଼ା ଘରକାମ ସେତେ ଖୋଷରା ଲାଗିଲା ନାହିଁ । ବାରିପାଖ ଝଙ୍କାଳିଆ ତେନ୍ତୁଳିଗଛଟା ବି ଅନ୍ୟଦିନ ପରି ଏକୁଟିଆ ସନ୍ଧ୍ୟାରେ ମାଡ଼ି ମାଡ଼ି ଚଢ଼ିବା ପରିବର୍ତ୍ତେ ସୁଲୁସୁଲିଆ ପବନ ବହିଆଣିବା ପରି ଲାଗିଲା । ଏ ଭିତରେ ସେ ନିରେଳା ଦେଖି ମେକ୍‌ସିଟା କେତେଥର ଦର୍ପଣ ସାମ୍ନାରେ ପିନ୍ଧି ସାରିଥିଲା ଓ ଦରକାର ମତେ ଏଠି ସେଠି ଟିକେ ମରାମତି ବି କରି ନେଇଥିଲା । ବୁଧବାର ସନ୍ଧ୍ୟାବେଳକୁ ତାର ପିକ୍‌ନିକ୍ ପାଇଁ ସବୁ ଆୟୋଜନ ସରିଥାଏ ।

ବାଞ୍ଛିତ ଗୁରୁବାର ଯଥା ସମୟରେ ଆସିଲା । ସକାଳୁ ତିନି-ଦିନର ମେଘ କୁଆଡ଼େ ସଫା ହୋଇ ସୁନ୍ଦର ଖରା ପଡ଼ିଥାଏ—ଏଠି ସେଠି ବର୍ଷା ପାଣି ଡବକାମାନଙ୍କରେ ଜିପ୍ କଡ଼ସିଟ୍‌ରେ ଶାନ୍ତା କପାଳ ଉପରୁ ଉଡ଼ନ୍ତା ବାଳ ସଜାଡ଼ୁ ସଜାଡ଼ୁ ଘର ଗେଟ୍ ପାରି ହୋଇଗଲା । ଅନେକ ଠାଙ୍ଗର, ସବୁଜ ପଡ଼ିଆ, ଉଠାଣି ଗଡ଼ାଣି ରାସ୍ତା ପାରି ହୋଇ ହଠାତ୍, ଆଗରେ ଶୀତଳ ସବୁଜ ମରୁଦ୍ୟାନଟିଏ ପରି ଝୁମକା ରେଷ୍ଟହାଉସ ଉଭାହେଲା ।

ପହଞ୍ଚିବାର କିଛି ପରେ ମହେଶ କହିଲା—ତମେ ସଫାସୁତୁରା ହୋଇ ବିଶ୍ରାମ ନିଅ; ମୁଁ ଆସେ ସାଇଟ୍ ଆଡ଼ୁ । ଦିପହରେ ବୁଲି ଆସିବା ନଈ କୂଳେ କୂଳେ ବ୍ୟାରେଜ ଯାଏଁ, ବନ୍ଧ ଉପର ହୋଇ ଆରପାଖକୁ ଯିବା—ଜଙ୍ଗଲ ଅଛି, ବଡ଼ ସୁନ୍ଦର ଜାଗା ।

ଶାନ୍ତାକୁ ଥଣ୍ଡା ପବନରେ ଫ୍ରେଶ୍ ଲାଗୁଥିଲା, ସଫାସୁତୁରା ହେବା କିମ୍ବା ବିଶ୍ରାମର ପ୍ରୟୋଜନ ନଥିଲା । ମହେଶ ଗଲାପରେ ତେଣୁ ଆଟାଚିରୁ ନୂଆ ମେକ୍‌ସିଟି କାଢ଼ି ସେ ଦର୍ପଣ ଆଗରେ ପିନ୍ଧିନେଲା ଶାଢ଼ୀ ପାଲଟି ।

ମୁନାକୁ ତାପରେ ପରସ୍ତେ ଗେଲକର ପଚାରିଲା—ମା' କେମିତି ଦିଶୁଚିରେ ? ଆଉ ସିଧା ଦୁହେଁ ବାହାରି ପଡ଼ିଥିଲେ ନଈକୂଳକୁ ।

ମହେଶ ଜିପ୍‌ରେ ଫେରିବାର ଓ କାହା ସାଙ୍ଗେ କଥାବାର୍ତ୍ତା କରୁ-କରୁ ସିଧା ଖାଇବା ଘରକୁ ଯିବାର ଶାନ୍ତା ଶୁଣିଲା । ମୁନା ଚଟ୍‌କରି ବିଛଣାରୁ ଓହ୍ଲାଇ କବାଟ ପର୍ଦ୍ଦା ଆରପାଖେ ଉଭାନ୍ ହୋଇଗଲା ମହେଶ ଉଦ୍ଦେଶ୍ୟରେ । ଶାନ୍ତା ବି ଉଠି ପଡ଼ୁ ପଡ଼ୁ ନିଜ ପୋଷାକ ବିଷୟରେ ସଚେତନ ହେଲା—ମହେଶ ସଙ୍ଗେ ଯାହା ସ୍ୱର ଶୁଭୁଛି, ତାଙ୍କ ଉପସ୍ଥିତି ଚଳିବ ତ ?

ଶାନ୍ତା ପୁଣି ବିଛଣା ଉପରକୁ ଗୋଡ଼ ଉଠାଇ ତକିଆ ଉପରକୁ ଆଉଜିଗଲା । ବାହାଘର ପରେ ସେମାନେ ପ୍ରଥମେ ଯେଉଁଠି ରହୁଥିଲେ, ସେଠି ମହେଶ ତାକୁ କହିଥିଲା—ଏ ଜାଗାଟା ସେତେ ଏଡ଼୍‌ଭାନ୍‌ସଡ୍ ନୁହେଁ କନା, ତମେ ସ୍ଲିଭ୍‌ଲେସ୍ ବ୍ଲାଉଜ୍ ଯାକ ପିନ୍ଧିଲେ ତମକୁ ନିଶ୍ଚୟ ଅଡ଼ୁଆ ଲଗିବ । ସେଇଠି ହିଁ ଥରେ ହାଇସ୍କୁଲ୍‌ର ସ୍ପୋର୍ଟସ୍ ଥାଏ, ମହେଶ କହିଲା—ବୁଝିଲ ଶାନ୍ତା, ଜାଗାଟା ପ୍ରାୟ ମଫସଲ କହିଲେ ଚଳେ, ମୁଁ ଭାବୁଛି ସ୍ତ୍ରୀ ଲୋକମାନେ ବୋଧେ ଆସୁନଥିବେ ସ୍ପୋର୍ଟସ ଦେଖିବାକୁ ।

ଶାନ୍ତା ବାକ୍‌ସରୁ ଶାଢ଼ୀ କାଢ଼ି ସାରିଥାଏ, କହିଲା—ଶ୍ରୀ ଓ ଶ୍ରୀମତୀ କରି ତ କାର୍ଡ଼ ଦିଆଯାଇଚି, ସେଦିନ ପୁଣି ହେଡ୍‌ମାଷ୍ଟର କେତେକରି କହିଲେ ଦୁହେଁ ଆସିବା ଲାଗି । ଆଉ କିଏ ଆସିଲେ ନ ଆସିଲେ ଆମର କଣ ଅଛି ?

ମହେଶ ଶାନ୍ତ ସ୍ୱରରେ କହିଲା—ତମେ ତ ବୁଝିବନି, ପିଲାଙ୍କପରି ଯୁକ୍ତି କରିବ । ତାପରେ ଶାନ୍ତା ବି ବୁଝିଗଲା, ଯେତେବେଳେ ମହେଶ କହିଲା ଯାଉ ଯାଉ—"ତମେ ଶାନ୍ତା ଟିକିଏ ଶାଢ଼ୀ ପିନ୍ଧି ତିଆରି ଥିବ, ଯଦି ସ୍ତ୍ରୀ ଲୋକ ଆସିଥିବେ, ମୁଁ କାହା ହାତରେ ଖବର ପଠାଇବି ।"

ହଠାତରେ ବିଛଣାରେ ବହି ଖଣ୍ଡିଏ ଧରି ଗଡ଼ପଡ଼ ହେଉଚି, ପଢ଼ାଶାଘର ରୁନା, ସପ୍ତମରେ ପଢ଼େ, କବାଟ ବାଡ଼େଇ 'ମାଉସୀ ମାଉସୀ'

ଡାକିଲା ଯେମିତି କି କୋଉଠି ନିଆଁ ଲାଗିଯାଇଛି । କବାଟ ଖୋଲିଲା ବେଳକୁ ତାର ଆଉ କହିବାକୁ ତର ନଥାଏ, ଫଁ ଫଁ ନିଶ୍ୱାସ ମଝିରୁ ଦୂର ମାଇକ୍‌ରୁ ଆସୁଥିବା ଆଓ୍ୱାଜ ଆଡେ ଅନେଇ ଅନେଇ କହିଲା ମଉସା କହିଲେ ବହୁତ ଲେଡ଼ିଜ୍ ଆସିଛନ୍ତି; ତମେ ବି ଚାଲ ।

ଶାନ୍ତା ଟିକିଏ ସମୟ ନେଲା ସ୍ଥିର କରିବାକୁ, ତାପରେ କହିଲା ତମେ ଟିକେ ରହନ୍ତ ଯଦି ଏକାଠି ଯାଆନ୍ତେ । ମୁଁ ଏକୁଟିଆ କେମିତି ଯିବି ଏତେ ବାଟ ।

ଝୁନା ଇତସ୍ତତଃ ହେଲା, ଅସନ୍ତୁଷ୍ଟ ହେଇ ମାଇକ୍ ସ୍ୱର ଆଡ଼କୁ ଚାହିଁ ରହିଲା । ଶାନ୍ତା ନିର୍ବିବାଦରେ ଲୁଗା ବଦଳି ବାହାରିଲା, କାରଣ ସେ ଜାଣେ ଯା ପରେ ନଗଲେ ମହେଶ ଭଲରେ ସ୍ପୋର୍ଟସ୍ ଦେଖିପାରିବେନି, ଫେରିଲାପରେ ବାଁରେଇ ହେଇ ଭୂଲ୍ କରିଥିଲା ପରି କ୍ଷମା ମାଗିଲା ପରି ହେବ ।

ଶାନ୍ତା ଭିତର ଘରସବୁ ବନ୍ଦ କରି ବାହାରକୁ ଗଲାବେଳକୁ ବାରଣ୍ଡାରେ ଝୁନା ନାହିଁ, ଦୂରରାସ୍ତା ମୋଡ଼ ପାଖେ ତାର ସାନ ଦୌଡ଼ି-ଯାଉଥିବା ଦେହଟି ଲୁଚିଯାଉଛି । ବିଚାରୀର ଆଉ ବୋଧେ ଧୈର୍ଯ୍ୟ ରହିଲା ନାହିଁ । ପୁଣି ଶାନ୍ତାର ଦ୍ୱନ୍ଦ୍ୱ । ତାପରେ ସେ ପୁଣି ଘର ଭିତରକୁ ଫେରି-ଆସି କବାଟ ବନ୍ଦ କଲା—ଏକୁଟିଆ ଏତେ ବାଟ ଚାଲିଚାଲି ଯାଇ ଭିଡ଼ ଭିତରେ ପଶିଲେ ମହେଶଙ୍କୁ ଭଲଲାଗିବନି, ସେ ପୁଣି ଭଲରେ ସ୍ପୋର୍ଟସ ଦେଖିପାରିବେନି ।

ପର୍ଦ୍ଦା ଆଡ଼େଇ ଶାନ୍ତାକୁ ଡାକୁଡାକୁ ମହେଶ ପଶିଆସିଲା । ଆସୁ ଆସୁ ରହିଯାଇ କହିଲା—ବାଃ, ସେଇଟି ପିନ୍ଧିଛ ନା !

ଶାନ୍ତା ଅପେକ୍ଷାକଲା ମହେଶ ଆଉ କିଛି କହିବା ଯାଏ ଓ ମହେଶ କହିଲା—ଚମତ୍କାର ମାନୁଛି ତମକୁ, ଜଳପରୀଟିଏ ପରି ଦିଶୁଛ ।

ଶାନ୍ତା ମୁହଁଯାକ ହସ ଉଚ୍ଛୁଳାଇ କହିଲା—ଆତୁର କରୁ ନା ! ତାପରେ ସିଧା ଉଠି ବସିଲା—ବନ୍ଧ ଉପରେ ବୁଲି ନଈ ଆରପାଖକୁ ଯିବା ବୋଲି କହୁଥିଲ ନା ?

ମହେଶ ଗୋଡ ହାତ ଲମ୍ବେଇ ସୋଫାରେ ବସୁ ବସୁ କହିଲା—ଯିବା ଯିବା, ବ୍ୟସ୍ତ କାହିଁକି ? ଏଇନା ଖାଇଦେଲି କନା ! ଶଳା ଗୁପ୍ତାଟା ଖଟେଇ ଖଟେଇ ମାରିଦେବ ।

ଶାନ୍ତା ଉଠିଯାଇ ଝରକା ପାଖେ ଠିଆ ହେଲା । ମୁନା ବାହାର ପବନରେ ଖେଳୁଚ ଦୌଡ଼ି, ଦୌଡ଼ି ବୁଲୁଚ ଘାସରେ ।

କିଛି ସମୟ ନ ଯାଉଣୁ କୁଆଡୁ ପୁଣି ମେଘ ଉଠେଇ ବର୍ଷା କୁଟିବା ଆରମ୍ଭ ହେଇଗଲା । ନିଦରେ ଢୁଳେଇ ପଡୁଥିବା ମହେଶକୁ ଉଠେଇ ଶାନ୍ତା କହିଲା—ଏଇ ଦେଖିଲ, ବର୍ଷା ହେଲାଣି । ଆସିବାଟା ବୃଥା ହେଇଗଲା ନା କ'ଣ !

ମହେଶ କଷ୍ଟରେ ଆଖି ଟେକ ବର୍ଷା ବାହାରକୁ ଅନେଇଲା, ତା'ପରେ ହଠାତ୍ ନିଦ ଗୁଡ଼ି ଯାଇଥିବା ଆଖିରେ ମିଚିକାମାରି କହିଲା—ବୃଥା କଣ ? ଉପରଓ୍ୱାଲାର ଇଚ୍ଛା—ସମୟଟା ବୁଲାବୁଲିରେ ବରବାଦ୍ ନ ହେଇ ଏଇ ରୁମ୍ ଭିତରେ ହିଁ କଟାଯାଉ ।

କେତେଟା ସେକେଣ୍ଡ୍ ନ ଯାଉଣୁ ଶାନ୍ତା ମହେଶର ଆଖିରୁ ଆଖି ଫେରାଇ ହସି ପକେଇଲା, କହିଲା—ଯାଏ ମୁଁ ମୁନାକୁ ଆଣେ ।

ମହେଶ ଉଠିଯାଇ କବାଟ ବନ୍ଦକଲା କହୁ କହୁ—ମୁନା ଚପରାଶୀ ସଙ୍ଗେ ଆରାମ୍‌ରେ ଖେଳୁଚ, କାହିଁ ତାକୁ ବିରକ୍ତ କରିବ ?

ଶାନ୍ତା ଏଥର ବର୍ଷାକୁ ଚାହିଁଲା—ଇସ୍, କି ବର୍ଷା ! ଏଥର କନ୍ତୁ ତା ସ୍ୱରରେ ଆଉ ଅଭିଯୋଗ ନଥାଏ । ଜୋତା ମୋଜା ଗୋଡ଼ରୁ କାଢ଼ି ଫୋପାଡ଼ି ଦେଉ ଦେଉ ମହେଶ କହିଲା ଶାନ୍ତା ଉପରୁ ଦୃଷ୍ଟି ନ ଫେରାଇ—ଆଉ ଥରେ ଏମିତି ବର୍ଷା ହେଉଥିଲା, ମନେ ପଡ଼ୁଚ ?

ଶାନ୍ତା ଉତ୍ତର ଦେବା ପୂର୍ବରୁ ବାହାର ମୋରମ୍ ପାଣି ଉପରେ କେତେ ହଳ ଜୋତା ପ୍ରାୟ ଦଉଡ଼ିଲା ପରି ଆସି ବାରଣ୍ଡାକୁ ଉଠିବାର

ଶୁଭିଲା । ପରେ ପରେ କବାଟ ଆର ପାଖେ ଡ୍ରଇଂରୁମ୍‌ରେ ବାଉଳା ପୁରୁଷ ସ୍ୱରର କଥାବାର୍ତ୍ତା—ମଣିଷ ଆଚ୍ଛା ହଇରାଣରେ ପଡ଼ିଲା, ଶଳା ବର୍ଷା··· ।

ଶାନ୍ତାର ମେକ୍ସି ପିନ୍ଧା ଦେହ ଉପରେ ମହେଶର ହାତ କୋହଳ ହୋଇ ଆସିଲା, କବାଟ ଆଡ଼କୁ ଅନେଇ ସେ ସ୍ୱଗତୋକ୍ତି କଲା—କିଏ ଶଳେ ଜୁଟିଲେ ଏତେବେଳକୁ ?

ମହେଶ ସେଇ ପୋଜ୍‌ରେ କଥାବାର୍ତ୍ତାକୁ କାନେଇ ଆଉ କିଛି ସମୟ ରହିବାପରେ ଶାନ୍ତା କହିଲା—ପି ଡବ୍ଲ୍ୟୁ ଡ଼ି ଡାକବଙ୍ଗଳା, କିଏ ଆସିଥିଲେ ଚୌକିଦାର ବୁଝିବ । ନା ତମର ବି ବୁଝିବା ଦରକାର ?

ମହେଶ ଉତ୍ତର ନ ଦେଇ ଠିଆ ହେଲା ଆଉ ଚପଲ ଗଳେଇ କବାଟ ଖୋଲିବା ପୂର୍ବରୁ କବାଟ ସେପାଖେ ଡ୍ରାଇଭର ନରହରି ବିନମ୍ର ଭାବେ ଡାକିଲା—ଅଜ୍ଞା ! ସର୍ ! ମହେଶ ତରବରରେ ମୁଣ୍ଡ କୁଣ୍ଡେଇ କବାଟ ଖୋଲି ବାହାରିଗଲା । ଭାରି ପର୍ଦ୍ଦା ସେପାଖେ ହଲରୁ ପରିଚୟର ଆଦାନ ପ୍ରଦାନ ଓ କଥାବାର୍ତ୍ତାର ଭଗ୍ନାଂଶ ସବୁ ଶାନ୍ତା ଶୁଣିଲା ।

ବାହାରେ କ୍ରମେ ସନ୍ଧ୍ୟା ଓହ୍ଲେଇ ଆସିଲା । ବର୍ଷା ଯେମିତି ଆସିଥିଲା ସେମିତି ହଠାତ୍ କେତେବେଳେ ଛାଡ଼ିଯାଇଥାଏ । ଚା ନେଇ ଆସିଥିବା ଚପରାଶୀଠୁ ଶାନ୍ତା ବୁଝିଲା କେଉଁ ଅଫିସର ତିନିଜଣ ଗାଡ଼ିରେ ଯାଉ ଯାଉ ତାଙ୍କ ଗାଡ଼ି ଖରାପ ହୋଇଗଲା ଏଇ କିଛିଦୂର ଆଗରେ । ଡ୍ରାଇଭର ନରହରି ତାଙ୍କ ଗାଡ଼ି ମରାମତି କରୁଛି ।

ମହେଶ ଆଗନ୍ତୁକମାନଙ୍କ ସହିତ ଡ୍ରଇଂରୁମ୍‌ରେ ବସି ଚା' ପିଉଥିଲା । ସମସ୍ତଙ୍କ ସମ୍ପୂର୍ଣ୍ଣ ଇଂରାଜୀ କଥାବାର୍ତ୍ତା ଓ ମଝିରେ ମଝିରେ ଜନ୍‌ର ଘାଗଡ଼ା ଗଳାରୁ ଶାନ୍ତା ବୁଝିଲା ଜନ୍ ବି ଚା ପିଉଛି ବାବୁମାନଙ୍କ ସଙ୍ଗେ । ଶାନ୍ତା ନିଜେ ମୁଣ୍ଡକୁଣ୍ଡାଇ ସଫାସୁତୁରା ହେଲା, ମୁନା ପାଇଁ ଦୁଧ ତିଆରି କରିଦେଇ ତା' ଜାମା ପେଣ୍ଟ ବଦଳାଇ ଦେଲା ଓ ପୁଣି ବିଛଣାରେ ଶୋଇ ବହି ପଢ଼ିଲା । ମୁନା ତା ମୁହଁ ପାଖେ ଝୁଙ୍କିପଡ଼ି ପତ୍ରିକା ପୃଷ୍ଠାରେ ଥିବା ଛବିକୁ ଦେଖାଇ ପଚାରିଲା—ଏ କିଏ ?

ହାତ ଘଣ୍ଟାର ରଙ୍ଗୀନ ବିଜ୍ଞାପନ—କଅଁଳ ନାଲି ଝଗ୍ ଗାଳ ପାହାଡ଼ ଉପରୁ ସବୁଜ ପଡ଼ିଆ ଓ ଫୁଲମାନଙ୍କରେ ପଡ଼ିଛି, ଘୋଡ଼ା ଉପରେ ବସିଛି ଝୋପିପିଛା ସୁଦର୍ଶନ ଯୁବକ । ପୃଷ୍ଠା ଲେଉଟାଇବାକୁ ଦେଉନାହିଁ ମୁନା, ସେଇଠି ହାତରଖି ପଚାରିଲା—ଏ କିଏ ମା ? ବାପା ?

ଶାନ୍ତା ମୁଣ୍ଡ ଟୁଙ୍ଗାରିଲା । ମୁନା କହିଲା—ଏଠିକି ଯିବା ଚାଲ୍, ଏ ଭିତରକୁ । ଶାନ୍ତା କହିଲା—ଯିବା ।

ମହେଶ ପଶିଆସି ତରବରରେ ବାଥ୍‌ରୁମକୁ ଗଲା, ସେ ବାହାର ଚାଲି ଯାଉ ଯାଉ ଶାନ୍ତା କହିଲା—ଓ, ବାଥ୍‌ରୁମ୍ ଯିବ ବୋଲି, ଆସିଲ ? ପୁଣି ଯାଉଛ ଗପିବାକୁ ? ମହେଶ ଉତ୍ତର ଦେଲା—କ'ଣ ଆଉ କରିବ ? ସେଠିତ ଅଲଗା ବାଥ୍‌ରୁମ ନାହିଁ । ବାହାର ଯାଉ ଯାଉ ତା'ର ହଠାତ୍ ଖିଆଲ୍ ହେଲାପରି ରହିଯାଇ କହିଲା—ଗପିବାକୁ ଯାଉଛି ବୋଲି କହିଲ ? ଅଢ଼ାଇ ତ ହୋଇ ଗଲାଣି, ଆଉ କ'ଣ ବୁଲିଯାଇ ହେବ ?

ଶାନ୍ତା ବୁଝିଲା ଅନ୍ୟ ଅଫିସର୍‌ମାନେ ପାଖ ଘରେ ବସିଥିଲା ବେଳେ ସ୍ତ୍ରୀ ସହିତ ରୁମ୍ ଭିତରେ ବସି ରହିବା ମହେଶକୁ ଅସଙ୍ଗତ ଲାଗିବ । ତଥାପି କହିଲା—କାମ ଯଦି ତୁମର ନାହିଁ, ଟିକେ ଗଡ଼ପଡ଼ ଭଲ ହେଇଥାନ୍ତା, ମାଗାଜିନ୍ ପଢ଼ନ୍ତ । ସେମାନେ ତ ତୁମର କୋଉ ପୁ ରୁଣା ବନ୍ଧୁ କି ବସ୍ ନୁହନ୍ତି ଯେ ପାଖରେ ବସି ରହିବା ଦରକାର ।

ମହେଶ ହସିଲା ଟିକିଏ ଦୋଷୀ ଦିଶିଲା ପରି, ମୁଣ୍ଡ ଲାଡ଼ ନାହିଁ କଲା 'ତମେ ବୁଝିବନି' ଅର୍ଥରେ । ପାଖକୁ ଆସି କହିଲା—ଗୋଟାଏ ଇଣ୍ଟରେଷ୍ଟିଂ ଆଲୋଚନା ପଡ଼ିଛି ! ତା'ପରେ ଶାନ୍ତା ଗାଲରେ ହାଲକା ଚୁମ୍ବା ମାରି ଯୋଗକଲା—ବୋର୍ ହେବନି ଶାନୁ, ସୁନା ଝିଅ ।

ଶାନ୍ତା କଥା କି ହସର ଉତ୍ତର ନ ଦେଇ ମୁହଁମାଡ଼ି ପଡ଼ିଥିବା ଖୋଲା ବହିଟି ଉଠାଇଲା । ମହେଶ ବାହାରି ଗଲା କବାଟକୁ ସନ୍ତର୍ପଣରେ ଆଉଜାଇ । ବୋର୍ ହେବନି ଶାନୁ ! ସତେ ଯେମିତି ବୋର୍ ହେବା ଗୋଟେ ଇଚ୍ଛାକୃତ କାମ, ଦୁଷ୍ଟ ହେଲା ଭଳି !

ଅଳ୍ପ ସମୟ ପରେ ବନ୍ଧ ଭିତରୁ ଶାନ୍ତାଙ୍କୁ ଚମକାଇ ମହେଶ ପଶି ଆସି କହିଲ—ବୁଝିଲ ଶାନ୍ତା, ପୁଣି ଚାଗିଦା ଆସିଲଣି । ଉପର ମୁଣ୍ଡରେ ପ୍ରବଳ ବର୍ଷା ହେଉଛି, ମୁଁ ସାଇଟ୍‌କୁ ଯାଉଛି, ବୁଝିଲ ?

ଶାନ୍ତା ପ୍ରାୟ ଆଶ୍ୱସ୍ତ ହେଲାଭଳି ପଚାରିଲ—ସେ ଲୋକମାନେ ଗଲେଣି ? ମହେଶ ମୁନାଙ୍କୁ କୋଳ କରୁ କରୁ କହିଲ—ସେମାନେ ତ ଗଲେଣି । ତମର କାନ୍ତୁ ଦାନଟା ଭଲରେ କଟିଲନ, ନୁହେଁ ?

ଶାନ୍ତା ସାଦା ସ୍ୱରରେ କହିଲ—ଘରୁ ବାହାର ଗୋଟାଏ ଜାଗାକୁ ଆସିଲ, ଦାନସବୁ ଶୋଇଲ ତ ଆରାମରେ, ଆଉ କ'ଣ ?

ମହେଶ ଉଠିଲ, କହିଲ—ମୋର ଫିକେ ଫେରିବାରେ ଡେରି ହେଲେ ବ୍ୟସ୍ତ ହେବନ । ଏଠି ଗୃହର ବାହର ସମସ୍ତେ ବହୁତ ପୁରୁଣା ବିଶ୍ୱସ୍ତ ଲୋକ । ଡରିବନ ବୁଝିଲ ? ତା'ପରେ ଶାନ୍ତାଙ୍କୁ ଓଠରେ ଚୁମାଟିଏ ଦେଇ ମହେଶ ବାହାରିଗଲେ ।

ମୁନା ଦାନସାରା ଖେଳ ବୋଧେ ଥକି ଯାଇଥିଲ, ଶାନ୍ତା ପାଖକୁ ଲାଗି ଶୋଇପଡ଼ି କହିଲ—ମା ଗୀତ ଗା', ଶୋଇବି । ମୁନା ଆଉ ଥରେ ଦୁଇଥର ଗୀତ ପାଇଁ କହିଲ ବେଳକୁ ଶାନ୍ତାର ହାତ ବନ୍ଧ ରଖିଦେଇ ମୁନାର ପିଠି ଥାପୁଡ଼ାଇବା ଆରମ୍ଭ କରିଦେଲ ଓ ଧୀରେ ସ୍ଥିର କରିବା ପରରୁ ଓଠରୁ ବି ଗୁଣୁ ଗୁଣୁ ସ୍ୱରଟିଏ ଫିଟି ପଡ଼ିଲ । ବହୁତ ପୁରୁଣା ଗୀତଟିଏ, ରେକର୍ଡଟା ବାହାଘର ପରେ ମହେଶ ଉପହାର ଦେଇଥିଲ ଶାନ୍ତାଙ୍କୁ । ଶାନ୍ତା ହୁଏତ ଗୀତଟା ଆଗରୁ ଶୁଣିଥିବ, କିନ୍ତୁ ବାହାଘର ପରେ ହିଁ ପ୍ରଥମ କରି ବୁଝିଥିଲ ଗଜଲଟିର ଅର୍ଥ । ଆଜିକାଲି ମୁନା ଜିଦ୍‌ରେ ଅଫଟ କଲେ ଶାନ୍ତା କେବେ କେମିତି ତାଙ୍କୁ ରେକର୍ଡ ବଜେଇ ଶୁଣାଏ, କେତେବେଳେ ବା ଏଇ ଗୀତଟି । ରେକର୍ଡଟିର ମଝି ମଝିରେ ଦାଗ ପଡ଼ିଗଲଣି ଯେ ପିନ ଅଟକିଯାଇ ଦୋହରାଇ ହୁଏ କେଉଁ କେଉଁ ପଦ ମଝିରୁ ନିରର୍ଥକ ଭାବେ—ତୁମକୁ ମୁଁ ଭଲ—କୁ ମୁଁ ଭଲ—କୁ ମୁଁ ଭଲ—କୁ ମୁଁ ଭଲ । ଗାଇଲାବେଳକୁ ବି ଅସଲ ଗୀତ ସାଙ୍ଗକୁ ସେଇ ଦୋହରା ପଦମାନ ସାମିଲ ହେଇଯାଉଛି ଆଜିକାଲି ।

ମୁନା ଶୋଇପଡ଼ିଥିଲା । ବାହାରେ ଟୁପ୍‌ଟାପ୍ ବର୍ଷା ପକାଉଚ ପୁଣି; ରୁମ୍ ଭିତରଟାରେ ଅଣନିଶ୍ୱାସୀ ଲାଗୁଚ, ମଶାରି ପକେଇଦେଇ ଶାନ୍ତା ଆସି ବାହାର ବାରଣ୍ଡାରେ ବେତ ଚଉକୀରେ ବସିଲା, ଲାଇଟ୍ ଡଲେ । ଲମ୍ବା ବାରଣ୍ଡାର ସେ ମୁଣ୍ଡ ଅନ୍ଧାର ଭିତରୁ ଭୂତ ପରି ଧୀରେ ବାହାରିଆସିଲା ଜନ୍ । ପାଖକୁ ଆସି ନିଶ୍ଚିନ୍ତରେ ଶାନ୍ତାଠୁ ଟିକଏ ଘୁଞ୍ଚି ଚଉକୀ ଟାଣି ବସିଲା । ପକେଟ୍‌ରୁ ସୁଷ୍ଟେ ସିଗ୍ରେଟ କାଢ଼ି ଧରାଇଲା, ଧୂଆଁ ଘୁଞ୍ଚୁ ଘୁଞ୍ଚୁ କହିଲା—ସାହେବ ସାଇଟ୍‌କୁ ଯାଇଛନ୍ତି ହେବା କଥା, ଏ ଯେଉଁ ବର୍ଷା, ଅଦ୍ଦିନିଆ ବଢ଼ି ତ ହେବ । ବନ୍ଧକୁ ବିପଦ ।

ଶାନ୍ତା ଅନେଇଲା ଜନକୁ । ତା' ମଇଳା କଳା ପରି ବାଳରେ ବର୍ଷା ପାଣି କେଇବୁନ୍ଦା, ଶେଥା ମୁହଁ ସାରା ମାନଚିତ୍ର ପରି ଗାଢ଼ ରେଖାମାନ । ଗମ୍ଭୀର ଗାରଟିଏ ପରି ପାଟି—ମୁହଁର ତଳ ଭାଗରେ ବେକପାଖରେ କ କୋଉଠି ଗୋଟିଏ କେନ୍ଦ୍ରବିନ୍ଦୁ ନେଇ ମୁହଁ ଉପରେ ବୃତ୍ତଟିଏ ଟଣାଯାଇଚ ଯେମିତି ପାଟିଟି ।

ଶାନ୍ତା ପଚାରିଲା— ତମେ ଖିଆପିଆ ସାରିଲଣି ? କଣ ଏଇଠି ଖାଅ, ଡାକବଙ୍ଗଳାରେ ?

ଜନ୍ ବର୍ଷରୁ ଦୃଷ୍ଟି ଫେରାଇଲା ଓ ତ ବୃତ୍ତପରି ପାଟି ସରଳ ରେଖାଟିଏ ହେଇଗଲା ମୁରୁକି ହସରେ—ମୁଁ ନିଜେ ରୋଷେଇ କରେ, ସଞ୍ଜବେଳୁ ଖାଇନିଏ । ଦୂର କୋଣଆଡ଼ର ଅନ୍ଧାର ବର୍ଷା ଆଡ଼କୁ ଆଙ୍ଗୁଠି ଦେଖାଇ କହିଲା—ସେଇଠି ମୋ ଘର, ବଖରାଏ କ୍ୱାଟର୍ସ ମିଳିଚି ।

ରାତି ବେଶୀ ଗଭୀର ମନେହେଉଚି, ଅଚହ୍ନା ନିପୁଛିଆ ଜାଗା ବୋଲି ବୋଧେ । ଭାସି ଆସୁଥିବା ବର୍ଷା, ପବନ, ବେଙ୍ଗ ଆଦିଙ୍କ ଘୋର ଶବ୍ଦ ବି କାନକୁ ନୂଆ, ଅଦ୍ଭୁତ ମନେ ହେଉଚି । ଜନ୍ ସିଗ୍ରେଟ୍ ଧୂଆଁ ଘୁଞ୍ଚୁଚି ପାଣି ଛିଟା ଓ ଥଣ୍ଡା ପବନକୁ । ବାହାରକୁ କୁଆଡ଼େ ଅନେଇଚି ଏମିତି ନିରେଖି ଦେଖିଲା ପରି, ତା ବଗିଚାକୁ ? ବାରଣ୍ଡାର ଆଲୁଅ ବେଶୀ ଦୂରଯାଏ ଯାଇପାରିନି, କୁହୁଡ଼ିଆ ବର୍ଷା ଦେହରେ ଗୋଳହେଇ ରହିଯାଇଚି ଅଳ୍ପ ଦୂରରେ ।

ଶାନ୍ତା ବିଗୁଡ଼ିଲ୍ଲ ଗପ କରନ୍ତା, ଏଇ ବିଦେଶୀ କ ଅଧା ବିଦେଶୀ ବୁଢ଼ାଟିର ହୁଏତ ରହସ୍ୟମୟ ଅତୀତ କିଛି ଥିବ। ଜନ୍ ବିଷୟରେ କେତେ ରକମ ଗୁଜବ ମନେଦେଶ କରୁଥିଲ। ଲୋକଟି କିନ୍ତୁ ଚୁପ୍‌ଚାପ୍ ବସିଛି ଏବେ, ବେଶ୍ ସନ୍ତୁଷ୍ଟ ଲୋକଟି ପରି।

ଶାନ୍ତା ପଗୁରିଲ—ଆଚ୍ଛା ଜନ୍, ତମେ ଇଂରେଜ, ନୁହେଁ ? (ଜନ୍‌ର ନିରୁତ୍ତର ଗୃହାଣୀ କଣ ସମ୍ମତି ?) ଆଚ୍ଛା ତମେ ଫେରିଗଲନି କାହିଁକି ତମ ଦେଶକୁ ? ଏଠି ରହିଯାଇଛ କାହିଁକି, ଏତେ ବୟସରେ ?…

ଜନ୍ ହସିଲି । ଶାନ୍ତା ଭାବିଲା ତା ଅସମାନଆ ଦାନ୍ତଗୁଡ଼ାଏ ଦିଶିଗଲା ବୋଲି ଯାହା ତାକୁ ହସ ବୋଲି ଧରି ନଆସିବ ! କଣ କହିଲା ଭଳି ହେଇ ନିଃଶ୍ୱାସ ଫେକିଲା ପରି କେଇ ସେକେଣ୍ଡ୍ ରହିଗଲା, ତାପରେ ବଡ଼ ପାଟିରେ ଡାକିଲା—ଆରେ ରାମ୍ ସିଂ, ମେମ୍‌ସାହେବଙ୍କ ପାଇଁ ଗୁ ଟିକେ ଆଣ୍ ।

ତା'ପରେ ବାପା କ କଲାର ନାଁ ପଚାରାଯାଇଥିବା ପରି ସାଦା ସ୍ୱରରେ କହିଲା—ମୋତେ ଏଠିକା ଜଳବାୟୁ ଭଲ ସୁଟ୍‌ହେଇଲା, ସେଥିଲାଗି ରହିଗଲି ।

ଏ ପ୍ରଶ୍ନୋତ୍ତର ପରେ ଆଉ କିଛି ଆଗକୁ ନାହିଁ ଜାଣିପାରି ବି ଶାନ୍ତା ପଚାରିଲ—ବହୁତଦିନୁ ଅଛ ଏଠି ?

ସେମିତି ବାପ କ କଲି ନାଆଁ ପରି ଉତ୍ତର— ହଁ, ବହୁତ ଦିନୁ ।

—ଏମିତି ବର୍ଷା ହେଲେ ସବୁଦିନେ ଏଇ ନଈରେ ବଢ଼ି ଆସେ ?

ଜନ୍ ଏଥର ବେଶ୍ ସତେଜ ଗଳାରେ ଉତ୍ତର ଦେଲି—ଏଇ ବଢ଼ି କ'ଣ ବଢ଼ି ? ଆଗେ ଯେତେବେଳେ ବଢ଼ି ଆସେ, ସେତେବେଳେ ନଦୀକୂଳର ଏ ପଥର ବନ୍ଧ ତ ନ ଥାଏ—ଏଇ ପାହାଚଯାକେ ଆସେ ପାଣି । ମୋ' ବଗିଚ୍ଛ, ଆମ କ୍ୱାର୍ଟର୍ସ—ସବୁ ବୁଡ଼ାଇଦିଏ ।

ଶାନ୍ତା ପଗୁରିଲ—ସେଇଠୁ ? କ'ଣ କର ?

ଜନ୍ ପୁରୁଣା ସିଗ୍ରେଟ୍ ଅଧିଆ ଫିଙ୍ଗି ନୂଆ ସିଗ୍ରେଟ ଧରାଉଥିଲା, ଦମେ ଟାଣି, ସରଳରେଖାରେ ହସିଲା । କହିଲା—କଣ୍ଟ୍ରା ନାହିଁ ଡାକ-ବଙ୍ଗଳାରେ ରହିଯାଏ କେତେଦିନ, ତା'ପରେ ବଡ଼ି ଗ୍ରୁଡ଼ୁଯାଏ ।

ଭୃତ୍ୟ ଆସିଲା ଓ ଦୁହେଁ କଣ୍ଟ୍ରା ସମସ୍ତ ଲାଗି କଥାବାର୍ତ୍ତାର ପ୍ରୟୋଜନ ଅନୁଭବ କଲେ ନାହିଁ ।

ଶାନ୍ତା କଳ୍ପନା କରୁଥାଏ କେଉଁ କୋଣରୁ ଘଣ୍ଟିଟିଏ ବାଜିଲେ ଏ ମୁଦା ଲୋକଟି କେଜାଣି ଠିକ ଏ ଫିଟିଯିବ । ଏ ଡାକବଙ୍ଗଳା ହତା ଭିତରର ଦୃଶ୍ୟମାନ ସଂସାର ହିଁ ଏ ବିଦେଶୀ ଲୋକଟିର ସମଗ୍ର ଜୀବନ, ସତ୍ତା— ଏମିତି କ'ଣ ସମ୍ଭବ ।

ଭୃତ୍ୟ ସରିଯାଇଛି । ଦୁହେଁ ଚୂପ୍‌ଚାପ୍ ବସିଛନ୍ତି, ରାତି ବଢ଼ି ଚାଲିଛି । ବର୍ଷା ବି । ଶାନ୍ତା ଅନେଇଛି ଧରିଶୁ ନ ଥିବା ଗେଟ୍ ଆଡ଼କୁ, କାନ ପାତିଛି ଶୁଭୁ ନଥିବା ଜିପ୍ ଶବ୍ଦକୁ । ଅପେକ୍ଷା କରିଛି—ତଥାପି ସରିବାକୁ ବାକି-ଥିବା ପିକ୍‌ନିକ ଦିନଟିକୁ ।

ଶାନ୍ତା ଅନନ୍ଦିଷ୍ଟ ଅନ୍ଧାରଆଡ଼ୁ ଆଖି ଫେରାଇ ଜନ୍‌କୁ ଚାହିଁଲା— ସେ ବଗିଚାଏ ପରି ନିଶ୍ଚୁପ ହୋଇ ମାଟି ଉପରେ ବହିଯାଉଥିବା ପାଣିକୁ ଚାହିଁଛି । କହିଲା—ଜନ୍ ଜାନ୍, ତମ ବିଷୟରେ ଏଠି ଲୋକେ କ'ଣ ଗୁଜବ କରନ୍ତି ?

ଜନ୍‌ର ଦୃଷ୍ଟି ତା' ଉପରକୁ ଫେରିଲା ଟର୍ଚ୍ଚ ଲାଇଟର ଫୋକସ ପରି, କହିଲା—ପ୍ରଥମ କରି ଆସି ମୋ' ବିଷୟରେ ଖବର ସଂଗ୍ରହ କରି-ସାରିଲଣି ? ଶାନ୍ତା ଘାବୁରେଇଲାନି । ପଚାରିଲା—ତମର କାଳେ ଭାରି ଏଡଭେଞ୍ଚରସ୍, ରୋମାଣ୍ଟିକ ଅତୀତ ?—ସତରେ ? ଜନ୍ ହୋ ହୋ ହସିଲା ଓ ପୁଣି ଅଭ୍ୟସ୍ତ ପୂର୍ଣ୍ଣଚ୍ଛେଦ ପକାଇ ବର୍ଷାକୁ ଅନେଇଲା ।

ଜନ୍ ଅଳ୍ପ ବୟସରେ କେମିତି ଦିଶୁଥିବ ? ଡେଙ୍ଗା ଗୋରା ଲୋକ, ଖଗ ନାକ ! ବିଜ୍ଞାପନରେ ସେଇ ଘୋଡ଼ା ଉପରେ ବସିଥିବା ଲୋକର ଟୋପି ତଳୁ ଦିଶୁଥିବା ମୁହଁପରି ଦେଖାଯାଉଥିବ କି କ'ଣ ! ଉଜାଣି ନଈକୂଳ ବଣ ଭିତରେ ଝୁମୁକା ଗେଷ୍ଟ ହାଉସ । କେଉଁ ଦମ୍ପତିଟିଏ ବଢ଼ି ଯୋଗୁ ରହିଯାଇଛନ୍ତି ଯାଇପାରିନାହାନ୍ତି, ଆଉ ଜନ୍ ବି ଆଶ୍ରୟ ନେଇଛି ଡାକବଙ୍ଗଳାରେ । ସ୍ୱାମୀଟି ଅଯଥାରେ ସମସ୍ତ ନଷ୍ଟ ନ କରିବ ବୋଲି

କୁଆଡ଼େ ଯାଇଚ ପାଖ ସରକାରୀ ବସନ୍ତଆଡ଼େ । ଅଦୂରରେ ନଟ୍ଟରିଆ ପଲ୍ଲୀ । ବାରଣ୍ଡାରେ ବଢ଼ାଇବା ସନ୍ଧ୍ୟାରେ; ପାଖରେ ସୁଦର୍ଶନ ଜନ୍ ।

ଜନ୍ ମୁହଁର ରେଖାମୟ ମାନଚିତ୍ରରେ ଦିଶୁନାହିଁ କିଛି ଏବେ । ଶରତର ନିର୍ମଳ ନଈକୂଳକୁ ପାଣି ନେବାକୁ ଆସୁଥିବା ଆଦିବାସୀ ଝିଅଟିଏ, ଜନ୍‌କୁ ଚମକାଇ ଦେଇ ଡାକୁଥିବ—ଏଇ ସାହେବ, ମୋତେ ଫୁଲ ଦେବୁ ?

ଶାନ୍ତା ପୁଣି ଡାକିଲା—ଜନ, ଆହୁରି ଗୋଟାଏ ରକମ ଗୁଜବ ଅଛି ତମ ବିଷୟରେ, ଜାଣ ?

ଜନ୍ ତା'ର ଦରଦସିକ୍ତ 'ହେଉ କଣ କହୁଚ କୁହ' ଭଙ୍ଗୀକୁ ଫେରି ଆସିଲା । ଶାନ୍ତା ଢୋକ ଗିଳିଲା, କହିଲା ଲୋକେ କହନ୍ତି, ତମେ କାଟ ଗୋଟାଏ ଫେରାରି ଆସାମୀ । ନ ହେଲେ ଇଂରେଜ ଲୋକ କିଏ ଆପଣା ଇଚ୍ଛାରେ ଏ ଅପନ୍ତରାରେ ଏମିତି ରହେ !

ଜନ୍ ମୁହଁରୁ ହସ ଆସ୍ତେ ମିଳେଇଗଲା ଓ ସେ ଅନ୍ଧାର ଆଡ଼କୁ ଦୃଷ୍ଟି ଫେରାଇଲା ଅନାୟାସରେ ।

ଶାନ୍ତା ତରବରରେ କହିଲା—ଏସବୁ ଅବଶ୍ୟ ବିଶ୍ୱାସଯୋଗ୍ୟ ନୁହେଁ । ଆସାମୀକୁ କିଏ ପୁଣି ସୁରକାରୀ ଦିଅନ୍ତା ବିନା ପଚରା ଉଚରାରେ ? ମୁଁ ବିଶ୍ୱାସ କରେନା ।

ଜନ୍ ମୁହଁକୁ ଚମକାଇ ଆମୋଦିତ ହସ ଫେରି ଆସିଲା, କହିଲା —ବଡ଼ ଦୟାଳୁ ଝିଅ ତ ତମେ । କିଏ କହିଲା ସୁରକାରୀ ମିଳନ୍ତାନି ? ବ୍ରିଟିଶ୍ ଯୁଗ କଥା ତମେ ଜାଣିନ । ସେତେବେଳେ ଗୋରା ଲୋକେ କିଛି ଭୁଲ ଭଟକା କରି ପକେଇଲେ ଆମ ଅଫିସରମାନେ ସେ କଥା ବୁଝୁଥିଲେ ।

ଜନର ନାଟକୀୟ ହସର ଶାନ୍ତା ଆଦୌ ପ୍ରତ୍ୟୁତ୍ତର ଦେଲାନି, ତା ଓଠ ଦି'ଫାଳ ମେଲି ଯାଇଥାଏ କେବଳ ଅଜାଣତରେ । ଜନ୍ ପକେଟରୁ ସିଗ୍ରେଟ୍ କାଢ଼ି ଲଗାଇଲା ଓ କହିଲା—ଏଇଟା ଶେଷ ସିଗ୍ରେଟ ଥିଲା, ସରିଗଲା । ତମ ସାହେବଙ୍କୁ କହିବ, ଗଲାବେଳେ ମୋତେ କିଛି ସିଗ୍ରେଟ ପ୍ରେଜେଣ୍ଟ କରିଯିବେ ।

ଦୁରରୁ ଝ'ପ୍‌ସା ଆଲୁଅ ସହିତ ଗାଡ଼ି ଶବ୍ଦ ଶୁଭିଲା ଓ ଶାନ୍ତା ଚଉକାରୁ ଡେଇଁପଡ଼ି ଖଣ୍ଡିଦଉଡ଼ି ମାରିଲା ପରି ପାହାଚଯାକ ଓହ୍ଲାଇ ଯାଇ ବର୍ଷା ପାଣିରେ ଗୋଡ଼ ଟିପରେ ଠିଆ ହୋଇ କହିଲା—ଆସିଗଲେ ନା କଣ ?

ଜନ୍‌କୁ ଏଥର ଖୁବ୍ ଚାନେ ହସର ଖୋରାକ ମିଳିଲା, କାଶ ଉଠୁଥିବା ହସ ମଝିରୁ କହିଲା—ଆସ ଆସ, ବସ ନିଶ୍ଚିନ୍ତରେ । ସେଇଟା ଜିପ୍ ନୁହେଁ—ରାତି ନଅଟା ହେଲାଣି, ଲଷ୍ଟ ବସ୍ ହୋଇଥିବ ।

ଓଦା ମୁହଁକୁ କାନରେ ପୋଛୁ ବାରଣ୍ଡା ଉପରକୁ ଉଠୁଥିବା ଶାନ୍ତାକୁ ସେମିତି ହସ ମଝିରୁ ପୁଣି ସେ କହିଲା—ଯାଅ ପୋଛି ପୋଛି ହୋଇ ଶୋଇବ ଯାଅ । ଆସାମୀ ଯଦିବା ହୋଇଥିବ, ଏବେ ଆଉ ମୋତେ ଡର କ'ଣ ? ଆଉ ମୋ ଦେହରେ ବଳ ଅଛି ?

ଶାନ୍ତା ରୁମ୍‌କୁ ଯାଉ ଯାଉ କହୁ ନ ହେଲା ଭଳି ମୁହଁ କରିବାକୁ ଚେଷ୍ଟା କରି ହସିଲା, କହିଲା—ଇଏ ଆସିଗଲେ ବୋଲି ଭାବିଲି । ଡରିବି କାହିଁକି ? ମୁଁ ଜାଣେ ତମେ ଜମା ଆସାମୀ ନୁହେଁ ।

ଜନ୍ ବି ଏଥର ଉଠୁ ଉଠୁ କହିଲା···କବାଟ ଦେଇ ଶୋଇପଡ଼, ଚୌକିଦାର ଅଛି, ସାହେବ ଏଇନା ଆସିଯିବେ । ବର୍ଷାଟା କମିଲେ ଯିବି ଭାବିଥିଲି ଯେ, ଦେଖୁଛି ଭିଜି କରି ଯିବାକୁ ହେବ । ହଉ, ଗୁଡ୍ ନାଇଟ୍ ।

ମୁନା ଶୋଇଚି ନିଶ୍ଚିନ୍ତରେ । ଆଣ୍ଠୁ ତଳକୁ ମେକସିଟା ଭିଜି ଯାଇଚି, ଯାଏ ବଦଳାଇଦିଏ । ଆହାଃ—ଏଇଟି ଅଣ୍ଟାପାଖକୁ ଚିରିଗଲା କେତେବେଳେ, ଚଉକାରୁ ହଠାତ୍ ଉଠିପଡ଼ୁ ପଡ଼ୁ କଣ୍ଟା ଧରିଲା ?

ମେକ୍‌ସି ବଦଳା ଦେଉଚି, ପୁରୁଣା ଶାଢ଼ୀ ପିନ୍ଧୁଚି, ତଥାପି ରକ୍ତ—ଦାଗଟା ପୁରା ସଫା ଯାଇନାହିଁ । ମହେଶ ଫେରିବେ, ମୋର ପାଇଁ ଦୁଃଖିତ ହେବେ, ଓ— । ମେକ୍‌ସିଟା ମୁଁ ଚଉକି ଦେଉଛି, କାଲି ଧୋଇ ପ୍ରେସ୍ କରିଦେବି, ଆଉ ବାକ୍‌ସରେ ସାଇତି ଦେବି ।



# ପୁଅ

ଭଗବାନ ସାର୍‌ଙ୍କ ପୁଅ ଯେଉଁ ବର୍ଷ ଗଲା ସେଇବର୍ଷ ଆମ ସହର ପାଖ ପୋଲଟି ନଈବଢ଼ିରେ ଭାସିଯାଇଥିଲା । ତା ପର ଫଗୁଣରେ ମୋ ବାହାଘର । ତା ପରଠୁ ତିଆରି ହେବ ହେବ ବୋଲି ଶୁଣା ଯାଉଥିଲା ଯେ କାହିଁ କୋଡ଼ିଏ ବର୍ଷ ପରେ ଏବେ ତିଆରି ହେଲା ସେ ପୋଲ । ନ ହେଲେ କେବେ ସେଠି ଟରନ୍ଧନିଆ ସଡ଼କ ଥାଏ ତ କେବେ ଡଙ୍ଗା । ଏଇ ଆଜି ମୋ ଝିଅ ବାହାଘର ଲାଗି ନିମନ୍ତ୍ରଣ ଚିଠି ଲେଖା ଆରମ୍ଭ କରିଦେବି ବୋଲି ବସିଲା ବେଳକୁ ଖବରକାଗଜରେ ପଢ଼ିଲି ଏକଥା । ଗୃହମନ୍ତ୍ରୀ ନିଜେ ପୋଲ ଉଦ୍‌ଘାଟନ କରିବେ ।

ନିନି ଏବେ କୋଉଠି ଅଛି କେଜାଣି । ତା ପୁଅଟା ବାଳୁଙ୍ଗା ହୋଇଗଲା, ପାଠ ପଢ଼ିଲା ନାହିଁ ବୋଲି କିଏ ଜଣେ କହୁଥିଲା । ନିନି ଯଦି ଆସିପାରନ୍ତା ମୋ ଝିଅ ବାହାଘରକୁ—ତା' ଠିକଣା ମୁଁ ଜାଣିନାହିଁ । ଭଗବାନ ସାର୍ ବି ରିଟାୟାର୍ଡ଼ ହେବା ପରେ କୋଉଠି ଯାଇ ରହିଲେ ଆମକୁ କାହାରିକୁ ଆଉ ଠିକ୍ ଜଣାନାହିଁ । ତେବେ କାହାକୁ ଭଲା ମୁଁ ଭୁଲିଉଚି, ନିନି ଏବେ ମୋ ଘରକୁ କୁଣିଆ ହୋଇ ଆସିବା କଥା ଭାବିଲେ ମୋତେ ନିଜକୁ ହିଁ ଅଖାଡ଼ୁଆ ଲାଗିଚି । ମୁଁ ଜାଣେ ସେ ବି କେବେ ଆସିବ ନାହିଁ । ମୋଠୁ ନିମନ୍ତ୍ରଣ ଚିଠି ପାଇଲେ ବି ନୁହେଁ, ନୂଆ ପୋଲ ଖୋଲି ଯାଇଥିଲେ ବି ନୁହେଁ । କୋଉ କାଳେ ଝିଅ ଦିନେ ସିନା ସେ ମୋ ସାଙ୍ଗ ଥିଲା । ତା'ପରେ ମୁଁ ବାହାହେଲି ସହରରେ, ଚାକିରି ଘରେ, ନିନି ବାହାହେଲା ମଫସଲ ଚାଷୀ ପରିବାରରେ । ଭଗବାନ ସାର୍‌ଙ୍କର ବା ଆଉ କେତେ ବଳ ?

ନନ ଆଉ ମୁଁ ପିଲାଦିନୁ ଗୋଟିଏ ସ୍କୁଲରେ ପଢ଼ୁଥିଲୁ। ଏକା ପଡ଼ାରେ ବି ଘର, ହେଲେ ଆମ ଘର ଏମୁଣ୍ଡ ଡାକ୍ତରଖାନା ରାସ୍ତାପଟକୁ ହେଲେ ତାଙ୍କ ଘର. ପଗ୍ର ଆର ମୁଣ୍ଡ। ଭଗବାନ ସାର୍ ଆମ ହାଇସ୍କୁଲରେ ଗଣିତ ମାଷ୍ଟର ଥିଲେ। ବାପାଙ୍କ ସାଙ୍ଗେ ବି ଭଲ ଚିହ୍ନାପରିଚୟ ଥିଲା ବୋଲି ସପ୍ତମ ପରଠୁ ମୁଁ ତାଙ୍କଠୁ ଗଣିତ ପଢ଼ିବାକୁ ଯାଉଥିଲି। ଅବଶ୍ୟ ମୋ ବାହାଘର ପୂର୍ବ କେତେମାସ ପରୀକ୍ଷା ପାଖାପାଖି ଆଉ ପଢ଼ିବାକୁ ଯାଇନାହିଁ। ସାର୍ଙ୍କ ଘରର ସେତେବେଳେ ଯାହା ଅବସ୍ଥା, ନନ ବିଗୁଣ୍ଣ ତ ଆଉ ମଟ୍ରିକଟା ବି ଦେଇ ପାରିଲାନି। ସାର୍ଙ୍କ ପୁଅ ଗୁଜୁରିଗଲା ପରେ ତାଙ୍କ ସ୍ତ୍ରୀ ବିଛଣା ଧରିଦେଲେ ପ୍ରାୟ। ନନକୁ ରନ୍ଧାବଢ଼ା ଘରକାମ ସବୁ କରିବାକୁ ପଡ଼ୁଥିଲା।

ସାର୍ଙ୍କର କାଳେ ଛଅ ନା ସାତ ପିଲା ମଲା ପରେ ଯାଇ ବଡ଼ ପୁଅଟି ବଞ୍ଚିରହିଲା। ମାଉସୀ କହୁଥିଲେ ତାକୁ ବି ଜନ୍ମପରଠୁ ବି ତିନିବର୍ଷ କାଳ ଏମିତି ଝାଡ଼ା ଜର ସବୁବେଳେ ଲାଗି ରହୁଥାଏ ଯେ ଯମ ତାକୁ ଅଇଁଠା କରି ଛୁଡ଼ିଦିବ ବୋଲି ଆଉ କାହାରି ଆଶା ନଥିଲା। ଏତେ ଦୁଃଖର ପୁଅକୁ କେଉଁ ବାପ ମା ଗେଲବସର ନ କରିବେ !

ମାଉସୀ ଅନେକ ସମୟରେ ବୁଲାର ପିଲାଦିନ କଥା କହନ୍ତି। ସେଇ ଯେଉଁ ଲଗାତର ଝାଡ଼ା ଜର ପରେ ଜଣେ ଦକ୍ଷିଣୀ ବାବାଙ୍କ ଝଡ଼ା-ଫୁଙ୍କାରେ ତା ଦେହ ଭଲ ହେଲା। ତା ପରଠୁ କାଳେ ଆଉ ଦିନେ ତାକୁ କେବେ ସର୍ଦ୍ଦି କି ଛିଙ୍କ ଟିକିଏ ହେଇନାହିଁ। ମୋର ବି ମନେଅଛି ବୁଲାର ଭାତଖିଆ ! ଥରେ ତା ଡାଲିକଂସା ପରିବାକୁ ଅଧାଆଙ୍ଗୁଳେ କମ୍ ଥିଲା ବୋଲି ବୁଲା ରାଗରେ ଅଗଣା ଶିଳ ଉପରକୁ ଫୋପାଡ଼ି ଦେଇଥିଲା। ଏଡ଼େ ବହଳ କଂସାଟା ଫାଟିଗଲା ବୋଲି ମାଉସୀ କାନ୍ଦି ପକାଇଥିଲେ। ବୁଲାର ପାନରୁ ଚୂନ ଖସିଲେ ଭଗବାନ ସାର୍ଙ୍କ ଘରେ ଝଡ଼ ବହିଯାଏ। ସେ ଝଡ଼ର ବତାସ ପବନ ସାହିସାରା ଲୋକଙ୍କ ଦେହରେ ବାଜେ। ଯେଉଁଦିନ ତା ଗୃହାରେ ଟିକିଏ ଲୁଣ କମ୍ ଲାଗିଥିବ କି ତା ପିଢ଼ାଟି ଭୁଲରେ ଆଉ କା ସାଙ୍ଗରେ ବଦଳି ହେଇ ଯାଇଥିବ, ସେଦିନ କଂସା ବାସନ କଣ ସାର୍ଙ୍କ ଚଉକି ଟେବୁଲ ଯାଇ ଦାଣ୍ଡ ଉପରେ ଦୁଲ୍‌ଦାଲ୍

ପଡ଼େ । ବାରପାର୍ଟରୁ ମାଉସୀଙ୍କ କାନ୍ଦଣା ଶୁଭେ । କୁନା ରାଗରେ ଖାଏ ନାହିଁ । ନନ ଗ୍ଲେର ପର ଲୁଚ ଆମ ଘରକୁ ଚାଲିଆସେ, ମୁହଁ ଶୁଖାଇ ସବୁକଥା ବଖାଣେ ।

ମାଉସୀ କହନ୍ତି, ଦକ୍ଷିଣୀ ବାବାଜୀ ଏତେ ଟାଣୁଆ ମନ୍ତ୍ର ପଢ଼ିଥିଲେ ଯେ ଯେଉଁ ଭୂତଟା ତା ଗୁଣ୍ଡି ଭିତରେ ପଶି ତାକୁ ଝାଡ଼ା ଜରରେ ଏତେ କଲବଲ କରୁଥିଲା ତା' ଜନ୍ମ ହେଲା ଦନୁ, ସିଏ ଏକା ଧୂଳିଫୁଙ୍କାକେ ବାହାରି ଗଲା, ବୁଲି ସେ ମାଡରେ ଚେତାବୁଡ଼ାଇ ପଡ଼ିଗଲା । ବାବାଜୀ କହିଲେ ବୁଲି ଗୁଣ୍ଡିରେ ଟିପ ମାର—ଏଣିକି ଏ ଭିତରେ ଆଉ କାହାର ଗୁଇ ପଡ଼ିବ ନାହିଁ । ସେଥିଲାଗି ବୋଧେ ବୁଲିର ଗୁଣ୍ଡିଟା ଏତେ ଓସାର, କଳଦେଲା ଦୁର୍ଗଟିଏ ପରି । କିନ୍ତୁ ମାଉସୀ କହନ୍ତି—ଯାହାର ଭାଗ୍ୟ ମନ୍ଦ ଯେତେ ଗୁଣି ଗାରେଡି ହେଉ ତାକୁ କେତେ ମତେ ଆଉ ରକ୍ଷା କରିବ, କେତେ ଆଉ କଳିବ ? ବାବାଜୀ ଦକ୍ଷିଣା ନେଇ ପଛ ନ କରୁଣୁ ଭୂତ ଲେଉଟି ଆସିଲା, ଗୁଣ୍ଡି ତ କଳା ହେଇଥିଲା, ଅଚେତ ଶୋଇଥିବା ବୁଲିର କାନବାଟେ ଦେଇ ଭୂତ ପଶିଲା ମୁଣ୍ଡ ଭିତରେ । ବାବାଜୀ ବି ଆଉ ଫେରିଲେ ନାହିଁ । ଅନ୍ୟ କୌଣସି ମନ୍ତ୍ର ଗୁଣି ଆଉ କାଢ଼ି କଲେନାହିଁ, ଡାକ୍ତର କବିରାଜ କେହି ସାଧ୍ୟ କରିପାରିଲେ ନାହିଁ । ଭୂତ ବସାବାନ୍ଧି ରହିଲା ବୁଲିର ମୁଣ୍ଡ ଭିତରେ । ପେଟକୁ ଯେତେ ଖାଇଲେ ବି ଆଉ ତା'ର ମୁଣ୍ଡକୁ ଲାଗିଲା ନାହିଁ ।

ଓସାର କାନ୍ଧ ଉପରେ ବୁଲିର ଅତି ସାନ ଗୋଲିଆ ମୁଣ୍ଡଟିଏ, ବାଳ ଚେଣ୍ଡିକରି କଟା ହୋଇଥାଏ । ଦେଖାପିଆ ମୁହଁଟି ସାନପିଲାର ମୁହଁ କି ବଡ଼ ମଣିଷର ମୁହଁ । ଜୁଳୁଜୁଳୁ ଆଖି ଦିଓଟିର ଠିକ୍ ଉପରକୁ ଲାଗି ବହଳିଆ ଭ୍ରୂଲତା ଦୁଇଟି ଚେଣ୍ଟ ଦବିଲା କପାଳଟିର ମଝାମଝି ଯୋଡ଼ିହୋଇ କୁଞ୍ଚେଇ ରହିଥାଏ ସଦାବେଳେ, ଯେମିତିକି ଆଖିବାଟେ ଦେଇ ସେ ଯାହା ଦେଖୁଛି ମୁଣ୍ଡ ଭିତର ଜନ୍ତୁଟି ତାକୁ ବୁଝିବା ଚିହ୍ନିବାକୁ ଦେଉନାହିଁ । ଓଠ ଦିଫାଳ ବି ବୁଝି ନ ବୁଝିପାରୁଥିବାର ଭାବହୀନ ହସଟିଏରେ ଦି' ପାଖକୁ ଟାଣିହୋଇ ରହିଥାଏ । ସେଥିରୁ ଯାହା ଯେତେବେଳେ ଶବ୍ଦ ବାହାରେ କେହି ସେ ଭାଷାର ଅର୍ଥ ଉଦ୍ଧାର କରି-

ପାରନ୍ତି ନାହିଁ । ସତେକି ଗଳି ଅପମାନର ଦାଉ ସାଧିବାକୁ, ବୁଲାକୁ ବାହାର ଦୁନିଆଁ ସହିତ ସମ୍ପର୍କ ରଖେଇ ନ ଦେବାକୁ ଭୂତ ପଣ କରିଥିଲା । ମନ ହେଲେ ମୁଣ୍ଡ ଭିତରେ ମାଛି ଉତ୍ପାତ କରାଏ, ମନ ହେଲେ ଶୋଇ ପକାଏ, ଆଉ କେବେ ବା କର୍ମାପ୍ଣା ଗ୍ଲେଟ ପିଲାଟିଏ ପରି ତାକୁ ହସାଏ ଖେଳାଏ ।

ସେଇ ବୁଲା, ଏତେ ଦିନ ପରେ ବି ତା' ହାବଭାବ କାଣ୍ଡ କାରଖାନା ସବୁ ମୋର ଗୋଟି ଗୋଟି ହୋଇ ମନେଅଛି । ଖାଲି ମୋର କାହିଁକି ସେତେବେଳେ ଯିଏ ସବୁ ବୁଲାକୁ ଜାଣିଥିଲେ ଆଜଯାଏଁ କିଏ ଭଲା ତାକୁ ଭୁଲିପାରିଥିବ । ଆଉ ଭଗବାନ ସାରଙ୍କ ବଡ଼ ପୁଅକୁ ଭଲା ସାରା ସହରରେ କିଏ ଜଣେ ଏମିତି ଜାଣି ନଥିଲା ! କିଏ ଜଣେ ଥିଲା ଯାହାର ଏକୁଟିଆ ସଞ୍ଜବୁଡ଼େ ଆଗରେ ବୁଲାକୁ ଦେଖିଦେଲେ ଛାତି କମ୍ପି ନ ଉଠିବ ।

ସେ ବାଟଦେଇ ଯିବାଆସିବା କରୁଥିବା ଲୋକେ ଭଗବାନ ସାରଙ୍କ ଘର ମଝିଝରକା ଆଡ଼େ ଦେଖି ନ ଦେଖିଲା ପରି ସିଧା ଅନେଇ ଯାଉଥିଲେ, ସ୍କୁଲ ପିଲାଏ କଟେଇ ଅନାନ୍ତି, ଆଉ ଦାଣ୍ଡକବାଟ ଆଉଜା ଦେଖିଦେଇ କଦବା କିଏ ସାହାସ କରି ଡାକିଦିଏ—'ବୁଲା ବାପ୍ପା ! କିଏ ବା ଆଉ ଧାପେ ଯାଇ ଦାନ୍ତ ଦେଖାଇ ଖଟେଇ ହୋଇପଡ଼େ । ଏ କଥାରେ ବୁଲା ସେତେବେଳେ ଓଠକୁ ଆଉ ଟିକେ ଓସାରି ଦିଏ, କେତେବେଳେ ବା ପାଟିକରି ତା' ନିଜସ୍ୱ ଭାଷାରେ ଗାଳିଦିଏ, ଆଉ କେତେବେଳେ ଅବା କାଠ ରେଲିଂ ଫାଙ୍କରେ ହାତ ଗଳାଇ ସ୍ଲେଟ୍‌ଟାଏ କି ବହିଟାଏ କି ଗିନାଟାଏ ଯାହା ପାଖରେ ପାଇଲା ଫୋପାଡ଼େ । ବେଳେ ବେଳେ ଦାଣ୍ଡକବାଟ କାହା ଅସାବଧାନତାରେ ଖୋଲା ରହିଯାଇଥିଲେ ବୁଲା ଦାଣ୍ଡକୁ ବାହାରି ଆସେ । ତାକୁ ବାହାରେ ଦେଖିଲେ ସାଇପଡ଼ିଶା ଲୋକେ ପ୍ରମାଦ ଗଣନ୍ତି, ପିଲାଙ୍କୁ ତା' ପାଖକୁ ନ ଯିବାକୁ ଆକଟନ୍ତି । ଅଚିହ୍ନା ପରିଚିତ ନ ହୋଇଥିଲେ ଗଳିମୁଣ୍ଡରୁ ତାକୁ ଦେଖିଦେଇ ଲୋକ ଆଉ ଆଗକୁ ଆସିବାକୁ ଭରସି ପାରନ୍ତି ନି, ସେଇଠୁ ଲେଉଟିଯାଆନ୍ତି । ହେଲେ ମୁଁ ଲକ୍ଷ୍ୟ କରିଛି ଗ୍ଲେଟପିଲାଏ ବୁଲାକୁ

ସେତେ ଡରନ୍ତି ନାହିଁ, ନିଜ ସମବୟସ୍କ ମଣେକରନ୍ତି ପ୍ରାୟ । ପିଣ୍ଡି ଉପରେ ବେଳେବେଳେ ବୁଲା ଦଳେ ସାନ ପିଲାଙ୍କ ସାଙ୍ଗରେ ବାଟୁଳି ବା ଜଳଡଣ୍ଡା ଖେଳୁଥିବାର ବି ଦେଖାଯାଏ । କାଚ ବାଟୁଳିଟିଏ ବୁଲା କେବେହେଲେ ଲକ୍ଷ୍ୟକରି ମାରିପାରେ ନାହିଁ, ନିର୍ଦ୍ଦିଷ୍ଟ କାଠିର ଧାପେ ଦୂର ଭୂଇଁରେ ଏଡ଼େ ଜୋର୍‌ରେ ସେ ଜଳଡଣ୍ଡା ବାଡ଼ାଏ ଯେ ଲମ୍ବ କାଠି ଖଣ୍ଡିକ ଭାଙ୍ଗି ଦିଖଣ୍ଡ ହୋଇଯାଏ । ପିଲାଏ ହସି ହସି ଗଡ଼ି ଯାଆନ୍ତି, ତାଙ୍କ ସାଙ୍ଗେ ବୁଲା ବି । ଆଉ ଯଦି କେତେବେଳେ ପିଲାଟିଏ ଆପତ୍ତି କରିବସେ, ସାଙ୍ଗ ବୋଲି ଭୁଲିଯାଇ ବୁଲାବାୟା ଡାକି ଦାନ୍ତ ଦେଖାଇ-ଦିଏ, ବୁଲାର ହୁଏତ ସେହିକ୍ଷଣି ରୂପ ବଦଳିଯାଏ । କାହାକୁ ବାହୁମୂଳରୁ ଧରି ନିର୍ଦ୍ଦମା ମାଡ଼ମାରି ପକାଏ ତ କେଉଁ ପଳାଉଥିବା ପିଲାଙ୍କୁ ଆଖିବୁଜା ଟେକା ପଥର ମାରେ । ଯେଉଁଦିନ ନରିବାବୁ ଘର ଟୁକୁକୁ ଗୁଣ୍ଡ ଉପରେ ମାଡ଼ି ବସିଥିଲା, ଠିକ୍ ସମୟକୁ ସାର୍ ନ ପହଞ୍ଚିଥିଲେ କ'ଣ ହୋଇଥାନ୍ତା କିଏ କହିବ ।

କେଉଁ ବଳରୁ କେଜାଣି, କେବଳ ଭଗବାନ ସାର୍ହିଁ ବୁଲାକୁ ଶାସନ କରିପାରନ୍ତି । ଆଉ କିଏ ହାତ ଉଠାଇଲେ ସେ କଚଟିକୁ ଧରି-ପକାଏ, ବଜ୍ରମୁଷ୍ଟିରେ ତାକୁ ବାଡ଼ି ଉଞ୍ଚେଇଲେ ଝାମ୍ପିନେଇ ଆଣ୍ଠୁ ଉପରେ ମୋଡ଼ି ଦିଖଣ୍ଡ କରି ଫିଙ୍ଗିଦିଏ । ଅଥଚ ସାର୍ ତାକୁ 'ବୁଲା' ବୋଲି ଡାକିଦେଇ ନାଲିଆଖି ଦେଖାଇଦେଲେ ଯଥେଷ୍ଟ, ଚଟକଣା ଦି'ଟା ମାରିଦେଲେ ତା'ର ଯେତେବଡ଼ ରାଗ ବି ପ୍ରାୟ ଶାନ୍ତ ହୋଇଯାଏ । ଅତି ଅକ୍ତିଆରରୁ ବାହାରିଲେ ସାର୍ ତାକୁ ରୁଲ୍‌ବାଡ଼ି ବା ଗୁଣ୍ଠରେ ମାରିବାର୍ ବି ଆମେ ଦେଖିଛୁ । ଲହଲହକା ଭଗବାନ ମାଷ୍ଟ୍ର ବାଁ ହାତରେ ଧୋତି କୁଞ୍ଚ ମୁଠେଇ ଡାହାଣ ହାତରେ ଗୁଣ୍ଠ ମାରି ଯାଉଥିଲା ବେଳେ ବୁଲା ଖାଲି ନଇଁପଡ଼ି ଦୁଇ ହାତରେ ମୁଣ୍ଡ ଘୋଡ଼େଇ ଆପଣାକୁ ବଞ୍ଚାଉଥାଏ ମାଡ଼ରୁ, ବେଳେ ବେଳେ ହାଉ ହାଉ ହୋଇ କାନ୍ଦେ । ପରେ ପୁଣି ମାଉସୀ ସାକୁଲା ସାକୁଲି, ପୋଛୁପୋଛୁ କରିଦେଲେ ଝିଆପିଆ ସାରି ବୁଲା ଦୂରରୁ ବଲବଲ କରି ଅନେଇ ରହିଥାଏ ସାରଙ୍କୁ । ସର୍କସର ବାଘ ଖଟୁଲି ଉପରେ ଗୁଡ଼ିଗୋଡ଼ ଟେକି ବସି ରିଂମାଷ୍ଟରକୁ

ଅନେଇଲା ପରି । ମୁଁ ଦେଖିଛି ସେ ଦିନସାରା ସାର୍ ଆଉ ବୁଲାଆଡ଼କୁ ସିଧା ଗ୍ୱହାନ୍ତି ନାହିଁ ।

ମୁଁ ସ୍କୁଲରୁ ଫେରି ଶୀଘ୍ର ଘରେ ମା ସାଙ୍ଗରେ କାମ କେତେଟା ସାରିଦେଇ ସାର୍ଙ୍କ ଘରକୁ ଯାଏ ପଢ଼ିବାକୁ । ଆମ ଘରେ ତ ଏକେ ଦାଣ୍ଡଘରେ ବାପାଙ୍କ ବୈଠକ ବସିଥାଏ । ଗାଁରୁ ବି ବନ୍ଧୁବାନ୍ଧବ କୁଣିଆ ଆସି ସବୁବେଳେ ହାଉଯାଉ ହେଉଥାନ୍ତି । ଜେଜେ ବାପା, ଜେଜେ ମା’ ତ ସହଜେ ଥାଆନ୍ତି ସବୁଦିନେ ପ୍ରାୟ । ତେଣୁ ମୁଁ ଗଣିତ ଛଡ଼ା ଅନ୍ୟ ପାଠବହି ବି ନେଇଯାଇ ନନ ସାଙ୍ଗରେ ବସି ପଢ଼େ । ମାଉସୀ ବି ମୋତେ ସ୍ନେହ କରନ୍ତି । ତାଙ୍କ ଦାଣ୍ଡଘର ଟେବୁଲରେ କୁନା ବସି ପଢ଼େ, ତାର କଲେଜ ପାଠ । ନନ ଆଉ ମୁଁ ଭିତର ବାରଣ୍ଡାରେ ମଶିଣା ପକାଇ ବସୁ, ଖରାଦିନେ ଅଗଣାରେ । ସାର୍ ଗୋଟାଏ ଦୁଇଟା ଅଙ୍କ ବୁଝାଇଦେଇ ପୁଣି କଷିବାକୁ ଦେଇଦିଅନ୍ତି । ଆଉ ନିଜେ ଖବରକାଗଜ କି ସ୍କୁଲପିଲାଙ୍କ ଖାତା ଦେଖିବାରେ ଲାଗିଯାଆନ୍ତି । କେବେ କେବେ ସେ ବଜାର ଆଡ଼େ ବାହାରିଯାଆନ୍ତି, ଆମେ ନିଜେ ପଢ଼ୁ, ନହେଲେ ଗପ କରୁ । ସେମିତି ଦିନରେ ସାର୍ ଯଦି ଶୀଘ୍ର ନ ଫେରିଲେ କୁନା ମୋତେ ଆମ ଘରପାଖ ବଣିଖୁଣ୍ଟ ଯାଏ ଛାଡ଼ିଦେବାକୁ ଆସେ । ନଚେତ୍ ବେଶିଭାଗ ଦିନ ମୁଁ ଅନ୍ଧାର ନ ହେଉଣୁ ଫେରିଆସେ, ବା ସାର୍ ନିଜେ ଛାଡ଼ିଦେବାକୁ ଆସନ୍ତି ।

ମୁଁ ଆଉ ନନ ଏକାଠି ଦେଢ଼ମାଇଲ ଦୂର ସ୍କୁଲ ଗ୍ୱଲିକରି ଯାଉ । ସକାଳ ନଅଟା ବେଳେ ମୁଁ ତାକୁ ଡାକିବାକୁ ଯାଏ । ସେତେ-ବେଳକୁ ତାଙ୍କ ଅଗଣା କୋଣ ଖୋଲାଛାତ ଗାଧୁଆଘରୁ କୁନାର ଗୀତ ଶୁଭୁଥାଏ, ନହେଲେ ଗାଧୁଆଘର ଟିଣ କବାଟ ଖୋଲିଦେଇ ଗାମୁଛା ଖଣ୍ଡେ ପିନ୍ଧି ଝାମ୍ପୁରା ଓଦାବାଳ ତକ୍ତି ମୋ ଆଡ଼େ ଦୃଷ୍ଟି ପଡ଼ିଗଲାକ୍ଷଣି ସେ ଗୀତ ବନ୍ଦ କରିଦେଇ ତରତର ହୋଇ ଅଗଣା ଡେଇଁ ପଶିଯାଏ ତାଙ୍କ ଶୋଇଲା ଘରକୁ ।

ବୁଲାର ସେତେବେଳକୁ ନିଦରୁ ଉଠିବା ବେଳ । କେବେ କେବେ ବା ବାରଣ୍ଡା ଧାରରେ ବସି ଦାନ୍ତ ଘଷୁଥାଏ । ବୁଲାର ଦାନ୍ତଘଷା

ଦେଖିଲେ ମୋର ମିମିକା ଛେଳି ଗପ ମନେପଡ଼େ, ଯିଏ ଦେଉଳ ଭିତରେ ପଶି ବାହାରେ ଜମିଥିବା ଲୋକଙ୍କୁ ଭୁଆଁ ବୁଲେଇବାକୁ ବିଷୟ ପର କଥା କହେ—ଏକଶିଙ୍ଗେ ମଣିଷ ମାରେଁ, ଦୁଇଶିଙ୍ଗେ ପର୍ବତ ଟାଳେଁ, ତାଳଗଛକୁ ଦାନ୍ତକାଠି କରେଁ···ଇତ୍ୟାଦି । ବୁଲାର ନିଦ ଭାଙ୍ଗିବା ପୂର୍ବରୁ ତା ଲାଗି ସାନ ବାଲ୍ଟିଏ ପାଣି, ତାଳ ଆଉ ଦେଢ଼ହାତ ଲମ୍ବ ଲେଖାଁ ଭଲ ମୋଟ ଦୁଇଖଣ୍ଡି ଦାନ୍ତକାଠି ଥୁଆ ହୋଇଥିବା ଦରକାର । କାଠିକୁ ଗୋଟିଏ ମୁଣ୍ଡରୁ ଚୋବାଇ ଚୋବାଇ ମଝି ମଝିରେ ଘୁଳାଏଲେଖାଁ ଚିଣ୍ଡାଇ ଥୁ କରି ଛାଟିଦେଇ ଶେଷରେ ଆରମୁଣ୍ଡ ଠିକ୍ ନିଜ ହାତମୁଠାଟି ମୁହଁ ପହଞ୍ଚ ଯିବାଯାଏଁ ବୋଧହୁଏ ସେ ଦାନ୍ତଘଷାର ଏକମାତ୍ର ଲକ୍ଷ୍ୟ । ତା'ପରେ ଦ୍ୱିତୀୟ କାଠିଟି ଚିରି ଜିଭ ଛେଲାଯାଏ, କାରଣ ପ୍ରଥମ ଦାନ୍ତକାଠିଟିର କେବଳ ଆଙ୍ଗୁଳିଏ ଅବଶିଷ୍ଟାଂଶ ଥାଏ । ସାନ ବାଲ୍ଟିରୁ ତାଳରେ ପାଣିକାଢ଼ି ଅଗଣାର ସେତେଦୂର ଯାଏଁ କୁଳୁକୁଞ୍ଚା ଯୋଗେ ଓଦା କରିଦେବ କରାଯାଏ । ବେଳେ ବେଳେ ପାଖଦେଇ ଚାଲିଯାଉଥିବା ଲୋକଟିର ଅଣ୍ଟା ତଳକୁ ବି ଅତର୍କିତରେ ପାଣି ପିଚକାରୀଟିଏ ବାଜିଯାଇ ପାରେ । ଆଉ ତା'ପରେ ବୁଲାର ହସି ହସି ବାରଣ୍ଡା ଉପରେ ସତସତକା ଗଡ଼ିଯିବାର ପାଳି ।

ଦାନ୍ତଘଷା ଶେଷହେବା ପୂର୍ବରୁ ପାଞ୍ଚ ଛଅ କପ୍ ଚା' ଧରୁଥିବା କେଟଲିଏ ଚା' ଓ କଂସା ଥାଳିଆଟିଏ ପିଢ଼ାପାଖରେ ଥୁଆ ଯାଇଥିବା ଦରକାର । ଚା' ସାଙ୍ଗରେ ଦିନେ ଦିନେ ମା'କୁ ସେ ମୁଢ଼ି ମାଗେ ତା ନିଜ ଭାଷାରେ ଡାହାଣ ହାତରେ ମୁଢ଼ିମୁଠା ପାଟିକୁ ଫିଙ୍ଗିବାର ଇସାରା କରି । ଆଉ କେବେ ବା ଆଗରୁ ଥୁଆ ହୋଇଥିବା ମୁଢ଼ି ପାଟିଆକୁ ଛୁଏଁ ନାହିଁ । ତା ମିଜାଜ୍ ଭଲ ଥିଲେ ମାଉସୀଙ୍କ କୁହାବୋଲାରେ ଗାଧୁଏ, ନହେଲେ ନାହିଁ । ଥରେ ଥରେ ଏକାଦିକ୍ରମେ ଦୁଇ ତିନିମାସ ଧରି ନିୟମିତ ବୁଲା ଠାକୁର ପୂଜା କରେ । ପୁଣି ବନ୍ଦ କରିଦିଏ ତା ମନ ହେଲେ । ବୁଲାର ଠାକୁରପୂଜା ବି ମୁଁ ଦେଖିଛି । ଚନ୍ଦନଗିନା ଉଛୁଳି ଯିବାଯାଏଁ ମହାପରାକ୍ରମରେ ସେ ଚନ୍ଦନ ଘୋରେ, ହାତ ପାପୁଲିରେ ପେଡ଼ିରୁ ଚନ୍ଦନ ପୋଛି ଗିନା ଧାରରେ ରାମ୍ପି ଦେଉଥାଏ, ପୁଣି ମୁଠାଏ ପାଣି ଛାଟିଦେଇ ଦି ହାତ ଭରାଦେଇ ନଇଁପଡ଼େ କାଠ

ଉପରେ । ଦି' ତିନିଥର ପେଡ଼ ଭାଙ୍ଗି ଯିବା ପରେ ମାଉସୀ ଠାକୁରଘରେ ସାନ ଚିକ୍କଣ ଶିଳଟିଏ ରଖିଥିଲେ । ଖର୍ଚ୍ଚ ବାଧୁଥିଲେ ବି ଚନ୍ଦନ ଜାଗାରେ କିନ୍ତୁ ସାଦା କାଠଖଣ୍ଡେ ରଖିଦେବାକୁ ତାଙ୍କ ଆତ୍ମା ଡାକେ ନାହିଁ ବୋଲି ଥରେ ସେ କହୁଥିଲେ । କାଳେ ଭଲରେ ପୂଜାକଲେ ଠାକୁରେ ତା ଡାକ ଶୁଣିବେ । ଖାଲି ଚନ୍ଦନ ନୁହେଁ, ସିନ୍ଦୂର ଆଉ ତୁଳସୀପାଣି ଶୃଙ୍ଗାର ଆତିଶଯ୍ୟରେ ଠାକୁରମାନେ ହୋରି ଖେଳିଲା ପରି ଦିଶନ୍ତି । ପୁରୁଣା କାଗଜ କ୍ୟାଲେଣ୍ଡରର ଦେବାଦେବୀମାନଙ୍କୁ ସାର୍ ଦିନେ ନଈରେ ବିସର୍ଜନ କରି ଆସିଥିଲେ । ଦୁଇ ତିନିଘଣ୍ଟା ଧରି ପୂଜାଘରୁ ଘଣ୍ଟି ସହିତ ଏକାକ୍ଷରୀ ମନ୍ତ୍ର ଜପ ଶୁଭୁଥାଏ । ଗୁମ୍ଫା ଭିତରେ କୁହାଟ ପରି — ନୋମ୍ ନୋମ୍ ନୋମ୍ । ସାରଙ୍କଠୁ ପୂଜା କରିବା ଶିଖିଲାବେଳେ ହିଁ ସେ ଓଁ ପଦ ଶିଖିଥିଲି କି ଆଗେ ତା ମୁହଁରୁ ବାହାରି ଥିଲା କେଜାଣି । ତା ମୁହଁରୁ ଶୁଭୁଥିବା ପଦଟି ଅବଶ୍ୟ ଙ୍ଗୋମ୍ ବା ମୋମ୍ ବି ହୋଇ ପାରିଥାଏ ।

ବାକି ସମୟଯାକ ବୁଲି ପ୍ରାୟ ଦାଣ୍ଡ ଝରକା ପାଖରେ ବସି ରାସ୍ତାଆଡ଼େ ଅନାଇ କମ୍ବା ଦଉଡ଼ିଆ ଖଟ ଖଣ୍ଡିକରେ ବସି ଦୁଇଗୋଡ଼ ଝୁଲାଇ ଝୁଲାଇ କଟାଏ । ବେଳେ ବେଳେ ଘଣ୍ଟା ଘଣ୍ଟା ଧରି ପଞ୍ଜୁରୀର ଶୁଆ ସାଙ୍ଗରେ କଥାଭାଷା ହୁଏ ବା ବିଲେଇ ସାଙ୍ଗରେ ଗେଲ୍ ହୁଏ ।

ବୁଲି ପ୍ରତି ତାଙ୍କ ପରିବାରର ପ୍ରତ୍ୟେକଙ୍କର ହାବଭାବ ବି ଭିନ୍ନ ଭିନ୍ନ । ମାଉସୀ ତାକୁ ସାର୍‌ଙ୍କ ପରି ଶାସନ କରିପାରନ୍ତି ନାହିଁ । ନିଜ ହାତରେ ଗାଧୋଇ ଦେଇ ଲୁଗା ପିନ୍ଧାଇ ମୁଣ୍ଡ କୁଣ୍ଡାଇ ଦିଅନ୍ତି, ମୁଣ୍ଡ ଗାଲି ଆଉଁସି ମୋ ଧନରେ, ହୁଣ୍ଡାରେ କହି ଗେଲ୍ କରନ୍ତି, କିନ୍ତୁ ବେଳ ପଡ଼ିଲେ ସନ୍ତ୍ରସ୍ତ ହୋଇ ରୋଷଘରେ ପଶି କବାଟ କିଳି ଦିଅନ୍ତି, ବେଳେ ବେଳେ କୁଆଡ଼େ ନ ଯାଇ ପାରି ଘୁନଆରେ ଖାଲି ହାଉଳି ଖାଆନ୍ତି । ସାର୍ କେବେ ବୁଲିକୁ ଗେହ୍ଲା କରିବାର ମୁଁ ଦେଖିନାହିଁ, କିନ୍ତୁ ବାହାରୁ ଫେରି ତା' ଲାଗି କଦଳୀଟାଏ କି ବିସ୍କୁଟଟାଏ ଆଣିଥିଲେ ସେ ଗଦ୍‌ଗଦ୍ ହୋଇ ଦାନ୍ତ ନିକୁଟି ସାର୍‌ଙ୍କ ମୁହଁକୁ ଅନେଇ ରହିଥାଏ । ଆମର ଅତି ପିଲାଦିନେ କୁନା ତା ସାଙ୍ଗେ ଗେଲ୍ ଗୋଳ

ହେବାର ପୁଣି ମର୍ମାନ୍ତିକ ମାଡ଼ ଖାଇବାର ମୁଁ ଦେଖିଛି । ଥରେ ଅଧେ ସାର୍ ନିଜେ ଆସି କୁନାକୁ ବୁଲି ହାବୁଡ଼ରୁ ଉଦ୍ଧାର କରିଛନ୍ତି । କିନ୍ତୁ ଟିକେ ବଡ଼ ହୋଇଗଲା ପରେ ସେ ବୁଲି ସହିତ କମ୍ ମିଳାମିଶା କରେ, ସତେ କି ତା ଦୃଷ୍ଟିରେ ହିଁ ମୋଟେ ବୁଲି ପଡ଼ୁନାହିଁ । ଥରେ ଥରେ କୁନା ପାଖଦେଇ ଚାଲି ଯାଉଥିଲେ ବୁଲି ତା ବାହୁ ମୂଳରୁ ଧରି ଝାଙ୍କିଦେଇ ବଡ଼ ଉତ୍ସାହରେ କିଛି ଗୋଟାଏ କହେ ତା ଭାଷାରେ, କିନ୍ତୁ କୁନାର ମୁହଁରେ କିଛି ହେଲେ ଫୁଟେ ନାହିଁ, ତା ଦୃଷ୍ଟି ବି ଅନ୍ୟଆଡ଼େ ନିର୍ବିକାର ଥାଏ ।

ନିଜର ବ୍ୟବହାର ଆଉ ପ୍ରକାରେ । ବୁଲିର କାମ ସେ କରିଦିଏ, ତା ଖାଇବା ବାଢ଼ିଦିଏ, ବିଛଣା ପାରିଦିଏ, ଲୁଗା କାଚିଦିଏ ନିର୍ବିବାଦରେ । ତାର ଠାରନାର ବୁଝେ, ହସେ ଉତ୍ତର ଦିଏ । କିନ୍ତୁ ବୁଲିଠାରୁ ନିରାପଦ କେତେହାତ ଦୂରରେ ଥାଏ ସଦାବେଳେ । ନିଜ ତରଫରୁ ବୁଲିକୁ କିଛିହେଲେ କୁହାବୋଲା କରେ ନାହିଁ ।

ବୁଲିର ପ୍ରକୃତି ଅବଶ୍ୟ ସବୁଦିନେ ସମାନ ନୁହେଁ । ଶାନ୍ତ ଅବସ୍ଥାର ବିରତିଟିଏ ପରେ ତାର ଉତ୍ପାତ ବଢ଼ିବାର ପାଳି ଆସେ ପ୍ରାୟ । ସେତେବେଳେ ତା'ର ଆଉ କୌଣସି ବ୍ୟବହାରରେ କାର୍ଯ୍ୟ କାରଣ ସମ୍ପର୍କ ନଥାଏ । ଦିନେ ହୁଏତ ଛୋଟ ଗୋଟିଏ କାରଣରୁ ତା'ର ପ୍ରଥମେ ରାଗ ଚଢ଼େ । ତା'ପରେ ଆଉ ସେ ରାଗ ଉପଶମ ହୁଏ ନାହିଁ । ଘରଯାକ ଜିନିଷପତ୍ର ଫିଙ୍ଗାଫୋପଡ଼ା କରେ, ଦୌଡ଼ିଯାଇ ବୋଷେଇ ଘରକୁ ପଶିଯାଇ ଭାତ ଡେକ୍‌ଚିକୁ ଗୋଇଠା ମାରିଦିଏ, ଅଗଣାରେ ଶୁଖୁଥିବା ମା'ର ଲୁଗା ଟାଣିଆଣି ଫାଳ ଫାଳ କରି ଚିରିପକାଏ । ଏ ସମୟରେ ସେ ସାର୍‌ଙ୍କଠୁ ନିୟମିତ ମାଡ଼ଖାଏ, ସ୍କୁଲ ଗଲାବେଳେ ସେ ମାଉସୀଙ୍କୁ ଆଦେଶ ଦିଅନ୍ତି—ବୁଲି ବୁଝିବା ଭଳି ଠାରନାର ସହିତ—"ୟାକୁ ଆଜି କିଛି ଖାଇବାକୁ ଦିଅନାହିଁ ।" ସେଥିରେ ବିଶେଷ କିଛି ଲାଭ ହୁଏ ନାହିଁ । ସାର୍ ଘରେ ନଥିଲେ ମାଉସୀ ବି ବୁଲିର ରାଗକୁ ବେଶି ଡରନ୍ତି, ତେଣୁ ଦଣ୍ଡ ଦେବା ତାଙ୍କଦେଇ ହୁଏ ନାହିଁ ।

ଏତେବେଳେ ତାଙ୍କ ଘରେ ଆଉ କିଛି ନିତିଦିନିଆ କାମ ସୁରୁଖୁରୁରେ ଚାଲେ ନାହିଁ । ପୂଜା ପର୍ବ ଲାଗି ଯଦି କିଛି ଖଜା ମିଠେଇ ତିଆରି ହେଲା, ପିଲା ସବୁ ଏକା ଖାଇଦିଏ, କିଦରେ ଗଉଡ଼ ଆଣିଲା କଞ୍ଚା ଦୁଧଟିକ ପିଇ ଦିଏ ଯେ ଘରଯାକ ସମସ୍ତେ ନାଳିଗୁହା ପିଅନ୍ତି । ମାଉସୀ ଗାଧୋଇ ଯାଇଥିଲାବେଳେ ଚୁନା ଆଉ ନନର ବହିପତ୍ରଯାକ ଆଣି ଚୁଲିରେ ପୁରେଇ ଦିଏ ବା ପାଚେରି ଆରପାଟକୁ ଫୋପାଡ଼ି ଦିଏ । ବେଳେ ବେଳେ ଦାଣ୍ଡକୁ ବାହାରିଯାଇ ଉଦ୍ଦଣ୍ଡ ହୁଏ । ଲୋକଙ୍କୁ ଠେକା ମାରେ, ଖେଙ୍କାରି ଗୋଡ଼ାଏ, ସାଇପଡ଼ିଶା ଲୋକେ ଅତିଷ୍ଠ ହୋଇ ପଡ଼ନ୍ତି । ସାର୍‌ଙ୍କୁ ଉପଦେଶ ଦିଅନ୍ତି, ବୁଝା ସୁଝା କରନ୍ତି— "ମାଷ୍ଟ୍ରେ, ଆଜିକାଲି କେତେ ଜାଗାରେ ଡାକ୍ତରଖାନା ସବୁ ଖୋଲିଛି ମୁଣ୍ଡ ରୋଗୀଙ୍କ ପାଇଁ । ଆପଣ ଥରେ ପଠେଇ ଦେଖନ୍ତୁ, କାଳେ କିଛି ଉପକାର ମିଳିବ, ତା ମୁଣ୍ଡ ଟିକିଏ ଥଣ୍ଡା ପଡ଼ିବ ।" ଆଉ କେତେକ ସିଧାସଳଖ କହନ୍ତି "ଦୁନିଆଁରେ କ'ଣ ପାଗଳ ନାହାନ୍ତି, ଆମେ ମନା କରୁଛୁ ? ତା ବୋଲି ଜଣକ ଲାଗି କ'ଣ ସାହିସାରା ଲୋକ ଆତଙ୍କରେ ରହିବାକୁ ବାଧ୍ୟ ? କହୋ ପାଗଳଖାନା ସବୁ କୋଉଥିପାଇଁ ତିଆରି ହୋଇଛି ତା ହେଲେ ?" କଳି ତକରାଳ ଯାଏ ବି କଥା ଯାଏ—ପାଗଳକୁ ରାଞ୍ଚି କି କୁଆଡ଼େ ଗୋଟାଏ ପଠାଅ, ନହେଲେ ତମେ ଯାଅ ଅନ୍ୟପଡ଼ାରେ ଘର ବୁଝ ।

ଜିଲାର ବଡ଼ ହାକିମ, ପୁଣି ମନ୍ତ୍ରୀ ଯାଏଁ ବି ନାଲିଶ୍ ଯାଇ ପହଞ୍ଚିଛି । —ନିର୍ଘାତ ଭୟାନକ ପାଗଳଟାଏ ଏମିତି ଖୋଲା ରହି ଜନଜୀବନ ବିପନ୍ନ କରିବ କାହିଁକି ?

କେବଳ ସାହି ଲୋକ ନୁହନ୍ତି, ସମୟ ପଡ଼ିଲେ ସାର୍‌ଙ୍କ ନିଜ ପରିବାର ଭିତରେ ବି ଏଇ ବିଷୟ ନେଇ ବାଦ ବିବାଦ ହୁଏ ।

ଧୂ ଧୂ ଖରାଦିନେ ଯେତେବେଳେ ପିଲା ଗାଧୁଆ ପାଣି କୁଣ୍ଡରେ ଗୋବର ଗୋଳେଇଦିଏ କି ପରିସ୍ରା କରିଦିଏ, ଏମିତି କି ରାତିଅଧରେ ପଡ଼ିଶା ଘରୁ ପିଇବା ପାଣି ମାଗିବାଯାକେ କଥା ଯାଏ, ଗୋଇଠା ମାରି ମାରି କବାଟ କି ଝରକା ଫାଳେ ଭାଙ୍ଗି ପକାଏ, ସାର୍‌ଙ୍କ ଧୋତି ଜାମା

ଚିତ୍‌ପକାଏ କି ନଳୀ କାନ୍ଦୁଅରେ ମାଡ଼ିଦିଏ ଯେ ସ୍କୁଲ୍ ସୁଦ୍ଧା ଯାଇ ପାରନ୍ତି ନି, ବୁଲିକୁ ସେଦିନ ନିସ୍ତୁକ ବେତମାଡ଼ ଦେବା ପରେ ଝାଳ ନାଳ ହୋଇ ବସି ପଡ଼ନ୍ତି ସାର୍ । କହନ୍ତି—"ଆଉ ନୁହେ, ବହୁତ ହୋଇଗଲା । ପିଲାକୁ ଏଥର କି ରାଞ୍ଚି ପଠେଇ ଦେବି । ଦେଖିବ ତମେ, ମୁଁ ସତ କହୁଚି ଆଉ ନୁହେଁ" ।

ମାଉସୀ କାନ୍ଦନ୍ତି । କହନ୍ତି—"କେତେ କଥା କହୁଚ ତମେ । କର୍ମ କାଣି ତ ଠାକୁର ଦେଇଚି, କୁଆଡ଼େ ଆଉ ଜନ୍ମକଲା ପୁଅକୁ ପଠେଇ ଦେବା ସତେ ?"

କୁନା ତା ବାପାଙ୍କ ପକ୍ଷ ନିଏ—"ଠାକୁର ଦେଇଚି ବୋଲି କେତେଦିନ ଆଉ ଏମିତି ସହିବା ମା ? ଆମକୁ ବି ତ ଜୀବନ ଦେଇଚି ସିଏ, ଆମେ ପୁଣି ବଞ୍ଚିବା ନା ନାହିଁ ?"

ଆଉ ପୁଣି ସେମିତି ଯେଉଁଦିନ ଘରସାରା ସଭିଙ୍କୁ ଖାଉଡ଼ା ଉପାସରେ ରଖିଦିଏ, ନିଜର ଲୁଗାଟାଣେ ଯେ ଅତିକ୍ଷ'ରେ ଚିରିଚିରେଇ ସେ ପଳେଇ ଆସେ ଆମଘରକୁ, ମା'ର ଚୁଟି ଧରି ଘୋଷାରି ନିଏ ଅଗଣାକୁ ଚୁଲିରୁ କାଢ଼ି ଆଣିଥିବା ଦରପୋଡ଼ା କାଠଫାଳିଆରେ ପାହାର ପକାଏ, ମାଉସୀ ସେଦିନ ବଡ ପାଟିରେ ବାହୁନନ୍ତି—"ହା ଦଇବରେ, କି ଦଣ୍ଡ ଦେଲୁ ମୋତେ ।" ପୁଣି ଲୁହ ପୋଛି ଦମ୍ଭ ଧରିଲେ କହନ୍ତି—"ବେଶ୍, ପଠେଇଦିଅ ତାକୁ ଯୁଆଡେ ତମର ମନ । ଆଉ ମୁଁ ପାରିବି ନି । ପୂର୍ବକର୍ମ ଯେତିକି ଭୋଗିଲି ଭୋଗିଲି ଆଉ ଯାହା ବଳକା ଥିବ ଆରଜନ୍ମକୁ ଦେବି ।"

ସାର୍ ସେତେବେଳକୁ ମୁଣ୍ଡ କୁଣ୍ଡାନ୍ତି । କହନ୍ତି—"ଦେଖିବା, ବ୍ୟସ୍ତ ହୁଅନାହିଁ ।"

କୁନା ମା' ପକ୍ଷ ନେଇ ବାପାଙ୍କୁ ବୁଝାଏ—"ଯାହା କରିବା କଥା ଏକାଥରେ ମନ ସ୍ଥିର କରି କଲେ ଯାଇ ହେବ ବାପା । ଟାଳି ଯାଉଥିଲେ କୌଣସି କାମ ହୋଇପାରିବ ନାହିଁ ।"

କୁନା ଏଇ କଲେଜରେ ପଢ଼ି ନାହିଁନ୍ତୁ ଏମିତି ସାହସ କରି ବାପା ମା'ଙ୍କ ମଝିରେ ପଡ଼ କଥା କହୁଥିଲା । ସାର୍ ରସିଗ ଇ କହନ୍ତି—"ତୁ ତ କୁନା ସଭିଙ୍କ ଉପରେ କଥା କହିଲୁଣି ଆଜିକାଲି ।"

କୁନା କିନ୍ତୁ ଆଜିକାଲି ଡରେ ନାହିଁ, ସାର୍‌ଙ୍କ ଏମିତି କଥାରେ ସୁଧା ଜବାବ୍ ଦିଏ—'ଆଉ କ'ଣ କରିବି ତେବେ ? ଏମିତି ଉପଦ୍ରବ ଭିତରେ ଭଲ କାହାର ପାଠ ହେଲଣି ? ମୋ' ଚିନ୍ତା ତ କାହାରି ନାହିଁ ଏ ଘରେ ।"

ଅନନ୍ୟୋପାୟ ହୋଇ ସାର୍ ଅନେକ ସମୟରେ ସାହି ଲୋକଙ୍କୁ ଆଶ୍ୱାସନା ଦିଅନ୍ତି, ହାକିମଙ୍କ ପାଖେ ପ୍ରତିଶ୍ରୁତି ଦିଅନ୍ତି—"ମୋ ବୁଢ଼ୀମା ଆଜ୍ଞା ଏବେ ଗାଁରୁ ଆସିଛି । ତା' ଆଗରେ ପଠେଇଦେଲେ କାନ୍ଦିବ । ସେ ଫେରିଯିବ ଆସନ୍ତା ପୁନେଇଁ ବେଳକୁ, ତା'ପରେ ଆଜ୍ଞା, ନିଶ୍ଚେ ଯିବ ବୁଲି । ହେଉ ପଛେ ମୋ ପୁଅ, ପାଗଳ ତ ଆଉ କାହାରି ନୁହେଁ ।"

ସଞ୍ଜବେଳେ ବାହାରେ ବସି ବଡ଼ ପାଟିରେ କହୁଥାନ୍ତି—"ହରି ନନା, ଗାଈକୁ ଲେଖାପଢ଼ା ହୋଇଗଲା । ଜବାବ ଆସିଗଲାଣି । ଏଥର ଯିବ ସେ । କଲେକ୍ଟର କହିଲେ ସିପାହୀ ଦେବେ ।"

ଧୋତି କାନରେ ଆଖିପୋଛି ପୁଣି କହନ୍ତି—"ତା' ଭାଗ୍ୟ ହେଲା ସେ ବଞ୍ଚିବ, ମୋର ବଳ କେତେ ?"

ସାର୍‌ଙ୍କ ଏସବୁ କଥାରେ କାଣିଚାଏ ମିଛ ନ ଥାଏ । ହେଲେ କିଛି ଦିନରେ କେମିତି କେଜାଣି ସବୁ ଥଣ୍ଡା ପଡ଼ିଯାଏ । ଦିନାକେତେ କ୍ରମାଗତ ବନ୍ଦ ରହିବା ପରେ ଯେତେବେଳେ ଭଗବାନ ସାର୍‌ଙ୍କର ମଝି ଝରକା ଖୋଲେ, ଦେଖାଯାଏ ବୁଲି ତା'ର ନିର୍ବିକାର ଶାନ୍ତ ରୂପ ଧରି ଚାହାନ୍ତି ନିକୁଟି ବାଟୋଇଙ୍କ ସାଙ୍ଗେ ଏ-ଏ-କଥା ଘୋଷା ହେଉଛି । ପଡ଼ୋଶୀ ବାଟୋଇ ବିଚରା ବୁଝିହିଁ ନ ଗୁଝିଁଲା ପରି ରହେ ସିନା, ତା' ମନ ଭିତର ପ୍ରତିହିଂସାର ନିଆଁଟି ଅପର ପକ୍ଷରୁ ଆଉ ପବନ ନ ପାଇ କ୍ରମେ ଧୂମା

ପଡ଼ିଯାଏ । ହିନ କେଉଁଠାରେ ପାଗଳଖାନାର ଆଲୋଚନା ଆପେ ମାଡ଼ି ପଡ଼ିଯାଏ ପଡ଼ାରୁ । ସବୁଠୁ ଟାଣୁଆ ଆଲୋଚକ ଦାମ ମହାନ୍ତିଙ୍କୁ ବି ଦୀର୍ଘ-ଶ୍ୱାସ ଗ୍ରୁଡ଼ି କହିବାର ଶୁଣାଯାଏ—"ଗ୍ରୁଡ଼ି । ଜନ୍ମ ଯିଏ ଦେଇଛି ଯିଏ ଆଉ କଣ ସହଜରେ ମାୟା ଡୋର କାଟିପାରିବ ?"

ହେଲେ ହିନକୁ ହିନ କେବଳ ଜଣକର ଆକ୍ରୋଶ କମେ ନାହିଁ, ବଢ଼ି ଗ୍ଲଲେ । କୁନାର ଏଇ ଭାବ ବିଷୟରେ ସାର୍ ଯେତେବେଳେ ଦୁଃଖ କରନ୍ତି—"ନିଜ ମା' ପେଟର ଭାଇର ଦାଉ ଯଦି କିଏ ସହିଯାଇ ନ ପାରିବ, ଆମେ ଆଉ ସାହିଲୋକଙ୍କୁ କ'ଣ କହିବା ?" ମୋତେ ବି ତାଙ୍କ ସହିତ ଦୁଃଖ ଲାଗେ । ମାଉସୀ ଆତୁର ଆପେ ବଢ଼ି କହନ୍ତି—"ଆମେ ବୁଢ଼ାବୁଢ଼ୀ ହେଲେ ବି ତ ପୁଣି ଆମକୁ ବୋଝ ବୋଲି କହିବ ।" ନାନି ମୋତେ ଏକୁଟିଆରେ କହେ—"କିଏ କ'ଣ ଜାଣିଶୁଣି ପାଗଳାମୀ କରେ ? କୁନା ଭାଇ ରଗାରୁଷା କରି ସବୁବେଳେ ସେଇ କଥା କହି ବାପା ମା'ଙ୍କ ମନରେ ଆଘାତ କରୁଛି ଦେଉଛି ।" ମୁଁ ନାନି ସହିତ ଏକମତ ହୁଏ । ପୁଣି ଯେତେବେଳେ କୁନା ଓଦା ସରସର ଖାତା ବହି ଲୁଗାରେ ପୋଛି ଶୁଖାଉ ଥାଏ, ଚଉକି ଉପରେ ଚଢ଼ି ଉଚ୍ଚରେ ଛାତ ତଳକୁ ମାରିଥିବା କାଠପଟା ଖଣ୍ଡକରେ ବହିପତ୍ର ସଜାଡୁଥାଏ, କଲେଜରୁ ଡେରିରେ ଫେରି ମା'କୁ ପଚାରେ—"ଆଜିପରି ମଣ୍ଡାପିଠା କରୁଥିଲୁ ମା ?" ଆଉ ମାଉସୀ ମୁହଁ ଶୁଖେଇ ଉତ୍ତର ଦିଅନ୍ତି—"କୋଉଠି ଆଉ ରଖେଇ ଦେଲିରେ ବାପ ? କେହି ଭଲ ଟିକିଏ ଗ୍ଲଖିଲେ ?" ମୋତେ ବି କୁନା ସହିତ ରାଗ ଲାଗେ ବୁଲି ଉପରେ, ସଭିଙ୍କ ଉପରେ ।"

ପିଲାଦିନୁ ସ୍କୁଲର ଅଧେ ପିଲା କୁନାକୁ ଚିହ୍ନନ୍ତି ବୁଲିବାପୁର ଭାଇ ହିସାବରେ । ବଜାରକୁ ସଉଦା ପାଇଁ ଯାଇଥାଏ, କିଏ ଜଣେ ବଡ଼ ପାଟିରେ ପଚାରିଦିଏ—"କିରେ କୁନା, ତୋ ଭାଇର ପାଗଳାମୀ ଟିକେ ଥଣ୍ଡା ପଡ଼ିଲା ନା' ଗ୍ଲଲିଛି ସେମିତି ପାଳି ?" କେବେ ଯଦି ଭୁଲରେ ବୁଲିର ମିଠାଖଣ୍ଡିକ ନେଇ ବସିଗଲା ଖାଇବାକୁ, ମାଉସୀ କାମୁଡ଼ି ଟାଣିନେଇ ଯାଆନ୍ତି । ଆଉ ପରୀକ୍ଷା ଦି'ଦିନ ପୂର୍ବରୁ ବୁଲି ଯଦି ତା'ର ବହିପତ୍ର ଗାଧୁଆ କୁଣ୍ଡରେ ବୁଡ଼େଇ ଦେଲା, ସାର୍ ବିରକ୍ତ ହୋଇ ପାଟି କରନ୍ତି—

“ନନ ବହିପତ୍ରର ଦାୟିତ୍ୱ ନିଜେ ନେଲେ ହୁଅନ୍ତା ନି ? ଜାଣିଚୁ ତ ତା’ କଥା ।”

ଘର ଏମିତି ସରଗରମ ଥିଲାବେଳେ କୁନାର ମୁହଁ ଯେମିତି ଦିଶେ, ଘରୁ ବାହାରେ କି ଏକୁଟିଆ ଚୁପ୍ ଥିଲାବେଳେ ସେ ମୁହଁ ପୁରାପୁରି ଭିନ୍ନ ଦିଶେ । ତେଣେ ମୁଁ ବହିପତ୍ର ନେଇ ତାଙ୍କ ଆଉଜା କବାଟ ଠେଲି ପଶିଗଲା ବେଳକୁ କୁନା ଟେବୁଲ ପାଖରେ ବସି ପଢୁଥାଏ । ମୁଁ ଭିତର-ଆଡୁ ଯିବା ପୂର୍ବରୁ ସେ ଟିକିଏ ଇତସ୍ତତଃ ହେଲା ଭଳି କହିଲା— “ଭିତରକୁ ଯା’ନା ଶଙ୍କୁ । କେହି ନାହାନ୍ତି ଖାଲି ବୁଲି ଅଛୁ ।” ବୁଝିଲି ବେଳକୁ ସାହିର ସୁବାସିନୀ ଅପା ଶାଶୁଘରୁ ଫେରିଛି ଯେ ମାଉସୀ ଆଉ ନନ ତାକୁ ଦେଖିବାକୁ ଯାଇଛନ୍ତି ଆଉ ସାର୍ ବଜାରକୁ । କୁନା ଘଣ୍ଟା କଣ୍ଟାକୁ ଦେଖାଇ କହିଲା—“ବସିଯା ଟିକିଏ ବେଳ, ଆସିଯିବେ ସେମାନେ ।”

କୁନା ମୋ ସହିତ ଖୁବ୍ କମ୍ କଥାବାର୍ତ୍ତା କରେ । ଏମିତି ଏକୁଟିଆ କେବେ ତା’ ସହିତ ବସିନାଇଁ, ମୋତେ ସଙ୍କୋଚ ଲାଗୁଥିଲା । ଦିନା କେତେବେଳେ ମାଉସୀ ସାହିର ଆଉ ଜଣକ ଆଗରେ କହୁଥିଲେ— “ମୋର ତ ଗରିବ ଘର । କ’ଣ ଦେଖି ସେମାନେ ଝିଅ ଦେବେ ବୋଲି ଆଶା କରିବି । ଯଦି ମୋ’ ପୁଅର ଭାଗ୍ୟ ଥିବ, ନିଜ ଦି’ ଗୋଡ଼ରେ ଠିଆ ହେବ··· ।”

କୁନା ଭାବି ଭାବି କେତେବେଳେକେ ପଚାରିଲା— “ପଢ଼ାପଢ଼ି କେମିତି ଚାଲିଚି ଆଜିକାଲି ?”

ମୋତେ ହସ ମାଡ଼ିଲା । ଖାତା ଉପରେ ଲେଖା ମୋ’ ନାଆଁକୁ ପୁଣି ଥରେ ପେନ୍‌ରେ ମଡ଼ାଉ ମଡ଼ାଉ କହିଲି— “ସେମିତି ।”

ପୁଣି କିଛି ବେଳ ଗଲା । କୁନା ବଡ଼ ମଣିଷ ପରି ଗମ୍ଭୀର ସ୍ୱରରେ କହିଲା— “ପରୀକ୍ଷା ତ ଆଉ ଅଳ୍ପଦିନ ରହିଲା’ ନା ?”

ମୁଁ ମୁଣ୍ଡ ଟେକାଇ ହୁଁ କଲି । ମୋ ନାଁକୁ ଡ୍ରିମପ୍ଲଥର ମଣ୍ଡାଉ ସାର ଆଉ ଥରେ ଆରମ୍ଭ କରିବାକୁ ଯାଉଥାଏ, କୁନା କହିଲି—"ଥାଉ ଏଥର, ଖାତାଟା ଚିରିଯିବ ।"

ମୁଁ ଚଟକିନି କୁନା ମୁହଁକୁ ଅନେଇଲି, ଆଉ ଓଠ ଉପରେ ହାତ ଚାପି ହସିପକେଇଲି ଅସମ୍ଭାଳ । କୁନା ବି ହସୁଥିଲି । ଆମେ କେବେ ଏମିତି ଏକାଠି ହସି ନ ଥିଲୁ ।

ମାଉସୀ ଆଉ ନନା ଆସିବାଯାକେ ଆମେ ଆଉ କିଛି କଥା କହୁନୁ । ତା' ଆଗରେ ଖୋଲା ବହିଖାତା ଥାଏ, ମୁଁ ବି କୋଣରେ ବହି ଖଣ୍ଡିଏ ମେଲିଥାଏ ।

ଯେଉଁଦିନ ରାତିସାରା କୁଁଉ କୁଁଉ ନିଦ ଭାଙ୍ଗିଲେ ମୁଁ ଭାବି ହେଉଥାଏ କୁନା କଥା । ଖାଲି ସେଉଁଦିନ ନୁହେଁ, ତା' ପରଦିନମାନଙ୍କରେ କେତେଥର ରାତିଅଧରେ ମୋ ନିଦ ଭାଙ୍ଗିଯାଏ, ଭାବେ କୁଆ ଡାକିଲା କି, ସକାଳ ପାହିଲା କି । ରାତି ପାହାନ୍ତାରୁ ଉଠି ମୁଁ ଚୁଲିରେ ବାସିକାମ ସାରିଦିଏ, ମା' ନ କହୁଣୁ ଟେବୁଲରେ ପାଣି ରଖିଦିଏ ।

କେତେ ଡେରିରେ ସ୍କୁଲ ବେଳ ହୁଏ ! ନନା ଘରେ ଗୋଡ଼ ଦେବା ମାତ୍ରେ କୁନା ତା' ପଢ଼ା ଟେବୁଲରୁ ଆଖି ଟେକି ମୋତେ ଅନାଏ, କେବେ ଭିତର ବାରଣ୍ଡାରେ ମୁଣ୍ଡ କୁଣ୍ଡାଇଲା ବେଳେ କାନ୍ଥ କଣ୍ଟାରେ ଟଙ୍ଗା ଦର୍ପଣ ଭିତରୁ ଅନେଇଥିବା ଆଖି ଦୁଇଟିରେ ମୋ ଦୃଷ୍ଟି ମିଶେ । ପୁଣି ସ୍କୁଲରେ ପିରିଅଡ୍ ପରେ ପିରିଅଡ୍ ବିତି ଯାଉଥିଲା ବେଳେ ମୁଁ ଭାବୁଥାଏ ଛୁଟି ହେବାକୁ ଆଉ କେତେବେଳେ ରହିଲା । କୁନା ତା' କଲେଜରେ କ'ଣ କରୁଥିବ । କ'ଣ ଭାବୁଥିବ ? ଭାବୁଥିବ ?

ପରୀକ୍ଷା ପାଖ ହେଇ ଆସିଥାଏ । ଖରାଦିନ । ନନା ଘର ଅଗଣାରେ ଗାଧୁଆ ଘର ପାଖେ ଦୁଇଗଛ ବୁଢ଼ା ମଲ୍ଲିଗଛରେ ଫୁଲକଡ଼ ଲଦି ହେଇଥାଏ । ପାଚେରି ସେପାଖରୁ ଲମ୍ବି ଆସିଥିବା ବଡ଼ ଆମ୍ବ ଡାଳଟିରୁ ଶୁଖିଲା ବଉଳ ଝଡ଼ି ପଡ଼ୁଥାଏ ଗୁଡ଼ିଆଡ଼େ । ମୁଣ୍ଡ ବାଳରେ, ଖାତାପତ୍ର

ଉପରେ । ସାର୍ ଟିକଏ ପାଖରୁ ଉଠିଲେ ନାନର ଆଉ ମୋର ଫୁସ୍‌ଫାସ୍ ଗପ ଆରମ୍ଭ ହୋଇଯାଏ । କୁନା କନ୍ତୁ ବଡ଼ ନିଷ୍ଠାରେ ଲାଗିଯାଇଥାଏ ତା ବି. ଏ. ପରୀକ୍ଷା ଲାଗି ।

ସେତିକିବେଳେ ବାହାରିଲା ପୁଣି ବୁଲାର ପାଗଳାମି । ଏତେ ଉଗ୍ର ରୂପ ତା'ର କେହି କେବେ ଦେଖି ନଥିଲେ । ନାହିଁ ନଥିବା କାଣ୍ଡକାରଖାନା ସବୁ ସେ କଲା ଏଥର । ଜଳନ୍ତା କାଠ ଚୂଲିରୁ କାଢ଼ି ଫେ ପାଡ଼ିଲା ସେ ପଡ଼ଶାଘରୁ ହଳେଗୋଳ ଶୁଭିଲା । ଅଗଣା ପଛକାନ୍ଥର କବାଟଟାକୁ ଘଷିଦେଲା ଯେ ତା' ଉପରେ ଆଉ ବଢ଼େଇ ସୁଦ୍ଧା ଆସିବାକୁ ମନା କଲେନି । ବାସ୍, ତା'ପରେ ବୁଲା ଇଚ୍ଛାମତେ ବାହାରି ଯାଇ ଆଖପାଖ ଅଞ୍ଚଳ ପରିକ୍ରମା କଲା । ଗୋଟିଏ ସାଇକେଲ୍ ଚଢ଼ାଳୀ ଆଡ଼େ କୁଣ୍ଡାଟାଏ ଫୋପାଡ଼ିଲା ଯେ ଅଳ୍ପକେ ବଞ୍ଚିଗଲା ଲୋକଟି । ବୁଲା ଉପଦ୍ରବରେ ସାହିଲୋକ ଦିନବେଳେ ଘରୁ ବାହାରିବାକୁ ଡରିଲେ । ସାର୍‌ଙ୍କ ପାଖେ ହଜାର ଅଭିଯୋଗ, ଅନୁନୟ, ଧମକ ଆସି ପହଞ୍ଚିଲା ଦିନରାତି । ସେ ସ୍କୁଲରୁ ଛୁଟି ନେଇ ବେତଧରି ବୁଲାକୁ ଘରେ ଜଗି ବସିଲେ, ଭିତରେ ତାଲା ଦେଇ ରଖିଲେ, ଗୁଡ଼ାଏ ମାରି ଲହୁଲୁହାଣ କରିଦେଲେ । ସାର୍‌ଙ୍କ ଆଖିରୁ ଟିକଏ ଅନ୍ତର ହେଲେ ଯେଉଁ କଥାକୁ ସେଇକଥା ।

ନାନ ପ୍ରାୟ ଆମଘରେ ରହୁଥାଏ । ଦିହେଁ ଏକାଠି ପୁଣି ତାଙ୍କ ଘରକୁ ଯାଉ । ସେଦିନ ସଞ୍ଜବେଳେ ଖଟ ଉପରେ ମୁଣ୍ଡରେ ହାତ ଦେଇ ବସିଥାନ୍ତି ସାର୍ । ସାରାଦିନ ଉତ୍ପାତ ପରେ, ସାରଙ୍କ ବେତରେ ଦେହଯାକ ନୋଳା ଫାଟିଗଲା ପରେ ପୁଣି ସୁଧାର ପିଲଟିଏ ପରି ଥାଳପାଖେ ବସି ମହାଗ୍ରାସ ପକେଇ ଦେଇ ବୁଲା ଶୋଇ ଯାଇଥାଏ । ମାଉସୀ ରାତି ରନ୍ଧାଲାଗି ପରିବା କାଟୁଥାନ୍ତି । ସାର୍ କହିଲେ—"ଏଥର ବୁଲାକୁ ପଠେଇ ଦବାକୁ ହେବ । ଆଉ ମୋତେ ବୁଦ୍ଧି ଦିଶୁନି । ତାକୁ ସାଙ୍ଗରେ ନେଇ ରହିଲେ କୌଣସି ଜାଗାରେ ମଣିଷ ଆମକୁ ରଖେଇ ଦେବେନି ।"

ଖୋଲା ଅଗଣାରେ ଦଉଡ଼ିଆ ଖଟଟି ଉପରେ ନିଶ୍ଚିନ୍ତ ଶୋଇ ପଡ଼ିଥିବା ପୁଅର ମୁହଁକୁ ଅନେଇ ମାଉସି ରହିଗଲେ । ନିଃଶ୍ୱାସ ଛାଡ଼ି

କହିଲେ—କିଏ, ତାଙ୍କୁ ପେଟ ପୂରେଇ ଗଣ୍ଡେ ଖାଇବାକୁ ଦେବ ସେଠି ? ଅସୁସ୍ଥ ହେଲେ କିଏ ବୁଝେଇ ସୁଝେଇ ଗ ଧୋଇ ଦେବ, ମୁଣ୍ଡ କୁଣ୍ଡେଇ ଦେବ ?”

ସାର୍ ମୁଣ୍ଡ ପୋତିଲେ । କିନ୍ତୁ ଟିକିଏ ବେଳ ରହି ମୁଣ୍ଡ ଟେକି ଧୀର ସ୍ୱରରେ କହିଲେ—“ସେଠି ଲୋକ ଥାଆନ୍ତି ସବୁ କାମପାଇଁ । ଏତେ ବ୍ୟସ୍ତ ହୁଅନାହିଁ ।”

ପରଦିନ ସକାଳୁ ମୁଁ ପହଞ୍ଚିଲା ବେଳକୁ ମାଉସୀ ଅନ୍ୟରୂପ ଧରିଥାନ୍ତି । କିଛି ସମୟ ଆଗରୁ ଜୋର୍‌ରେ କାନ୍ଦିଥାନ୍ତି ବୋଧେ, ହିକା ଉଠୁଥାଏ । ମୁଣ୍ଡ ମଝିରେ ମାଡ ବାଜିଥାଏ, ରକ୍ତ ଜମି ଶୁଖି ଯାଇଥାଏ, କାନ ଗାଲ ଉପରକୁ ପଛପାଖେ ଲୁଗା ଉପରକୁ ଗଡ଼ି ଆସିଥିବା ରକ୍ତଧାର ବି କଳା ଦିଶୁଥାଏ । ଚୁନା ବି ବିପର୍ଯ୍ୟସ୍ତ ଦିଶୁଥାଏ, ସାର୍ଟ ଚିରି ଯାଇଥାଏ, ବାହୁରେ ନାଳ ମାଡ଼ ଦାଗ, ଗାଲରେ ଆଙ୍ଗୁଠା ଚିହ୍ନ । ବୁଲୁକୁ ଭିତର ଘରେ କୌଣସି ମତେ ବନ୍ଦ କରାଯାଇ ସାରିଥାଏ । ବଡ଼ ପାଟିରେ କହୁଥାନ୍ତି ମାଉସୀ—“ଆଉ ପାରିବି ନାହିଁ । ଦିଅ ପଠେଇଦିଅ ତାଙ୍କୁ ପାଗଳ ଗାରଦ । ଆୟୁଷ ଥିଲେ ଖାଇପିଇ ବଞ୍ଚି ରହିବ, ନହେଲେ ଭୋକ ଶୋଷରେ । ଘରସାରା ସଭିଙ୍କୁ ନିପାତ କରିଦେବ ସେ ନଇଲେ, ଜଣକୁ ରଖିବ ନାହିଁ । ଯାଉ ସେ, ଆଜି ଲେଖା ତମେ ।”

କେତେଦିନ ପରେ ସ୍କୁଲ ବାଟରେ ନନା ମୋତେ କହିଲା, ବୁଲୁକୁ ପଠାଯିବାର ସବୁ ବନ୍ଦୋବସ୍ତ ହୋଇଗଲା ବୋଲି । ଯେତେ ଆଲୋଚନା ହେଲେବି ପ୍ରକୃତରେ କଥାଟା ଏଯାଏଁ ପହଞ୍ଚି ପାରିବ ବୋଲି ମୋର ବିଶ୍ୱାସ ନ ଥିଲା । ପଚାରିଲି—“ମାଉସୀ ରାଜି ହେଲେ ?”

ନନା ମୁଣ୍ଡ ଟୁଙ୍ଗାରିଲା । କହିଲା—“କୁନାଭାଇ ତ ଚିଠିପତ୍ର ଲେଖାଲେଖି କଲା । ବାପାଙ୍କୁ ରାଜି କରାଇଲା । ପୋଲିସ ସାଙ୍ଗରେ ଯିବ, ବନ୍ଦୋବସ୍ତ ହୋଇଛି ।”

ସେଦିନ ରାତିରେ ମୋତେ ଆମ ଘରକୁ ଗ୍ଡ଼ିବାକୁ ଯିବା ବାଟରେ କୁନା ବି କହିଲା—"ବୁଲାଭାଇର ଯିବା ବନ୍ଦୋବସ୍ତ ହୋଇଗଲା ସବୁ ।"

ଉତ୍ତର ଦେଲି—"ଜାଣିଚି । ନନା କହୁଥିଲେ ।"

ଟିକିଏ ବେଳ ଚୁପ୍ ରହି କୁନା କହିଲା—"ନନା ନିଶ୍ଚେ କହିଥିବେ, ମୁଁ ହିଁ ଜିଦ୍ କରି ଆପେ ସବୁ ଠିକ୍‌ଠାକ କରିଚି ବୋଲି ।"

ମୁଁ ଡରି ଡରି କହିଲି—"କିଏ ତ ପୁଣି କରନ୍ତା । ବାପ ମା'ଙ୍କର ପୁଅଲାଗି ସ୍ନେହ ରହିବ ନିଶ୍ଚେ, ସେଥିଲାଗି···"

ମୋତେ କଥା ମଝିରୁ କାଟି କୁନା କହିଲା—"ହେଲେ ମୁଁ ବୁଝିପାରୁ ନାହିଁ ତାକୁ, ବାପା ମା'ଙ୍କର ଇଏ କି ସ୍ନେହ ? ପୁଅକୁ ଭଲ ପାଇବା ଉଚିତ, ତା' ବୋଲି କ'ଣ ସ୍ନେହ ଉପରେ ମଣିଷର ଅକ୍ତିଆର ନଥାଏ ?"

ମୁଁ ବଲ ବଲ କରି କୁନା ମୁହଁକୁ ଅନେଇଲି । ତା' ଦୃଷ୍ଟି ଅନ୍ୟଆଡ଼େ ଥାଏ, ମନ ବି ।

ତା'ପର କେଇଦିନ ଭଗବାନ ସାହୁଙ୍କ ଘରେ ଅଦ୍ଭୁତ ଧୂପା ଉଠିଲା । କୁନା ଆପେ ବଜାର ଯାଇ ବୁଲା ଲାଗି କନା କିଣି ଦରଜୀକୁ ଦେଇ ଆସିଲା । ଆଗଭଳି ଶସ୍ତା କନାର ଫତେଇ ହାଫ୍‌ପେଣ୍ଟ ନୁହେଁ, ବୁଲା ଏଥର ଭଲ ପାଇଜାମା କାମିଜ ପିନ୍ଧିବ । ପୁରୁଣା ଟିଣ ବାକ୍ସ-ଟିଏରେ ରଙ୍ଗ ଲଗାହେଲା । ମାଉସୀ ନିତି ସକାଳ ସନ୍ଧ୍ୟା ଭଲମନ୍ଦ ରାନ୍ଧି ବୁଲାକୁ ବାଢ଼ି ଦେଉଥାନ୍ତି । ସାର୍ ସଞ୍ଜବେଳେ ଆଉ ବଜାର ଆଡ଼େ ଯାଆନ୍ତି ନାହିଁ କି ଆମକୁ ପାଠ ପଢ଼ାନ୍ତି ନାହିଁ, ଘର ଭିତରେ ଥାଆନ୍ତି ଏଣୁତେଣୁ କାମ ଆଳରେ । ଖବରକାଗଜ କଣ୍ଟିକର ଗୋଟିଏ ପୃଷ୍ଠାକୁ ଅନେକ ବେଳ ଅନେଇଲା ପରେ ଥୋଇଦେଇ କପାଳରୁ ଝାଳ ପୋଛି କହନ୍ତି—"ବୁଝିଲ, ସେଠି ଅନେକ ଥିବେ ତାରି ଭଳି । ଏଠି ଏକୁଟିଆ ହେଉଚି ବୋଲି ଉପ୍ପାତ କରୁଚି; ସେଠି ମିଳିମିଶି ରହିଲେ ତାକୁ ଭଲ ଲାଗିବ ।"

ବୁଲର ଉତ୍ସାହ ଟିକିଏ କମିଥାଏ । ଘରେ ନୂଆ ରକମର ଆବହାଓ୍ୱା ବ୍ୟସ୍ତତା ସେ ବାରି ପାରୁଥାଏ କି କ'ଣ । ମା' ତାକୁ ନୂଆ ଜାମା ପିନ୍ଧାଇ ଦେଲାରୁ ବଡ଼ ଖୁସି ହେଲା, ନିଜ ଦେହକୁ ଆଉଁସି ସଭିଙ୍କ ପାଖକୁ ଗୋଟି ଗୋଟି କରି ଯାଇ ଦେଖାଇଲା ।

ସାର୍ କହୁଥାନ୍ତି—"ଦେହପା ଲାଗି ସେଠି ଡାକ୍ତର ମହଜୁଦ ଅଛନ୍ତି, ବୁଝିଲ । ଚିନ୍ତା କରିବାକୁ କିଛି ନାହିଁ ।"

ମାଉସୀ ନୂଆ ଗୃହର ତଉଲିଆ ବାକ୍ସରେ ରଖୁ ରଖୁ କହନ୍ତି —"ହଁ" ।

ସାର୍ ପୁଣି କହନ୍ତି—"ଖେଳିବା ଲାଗି ପଡ଼ିଆ ଅଛି କାଳେ, ନାନାଦି ସରଞ୍ଜାମ ଅଛି ।"

ମାଉସୀ ପିଠି ପାଖକୁ ମୁହଁ ବୁଲାଇ କାନ୍ଦନ୍ତି । ସାର୍ ଆଶ୍ୱାସନା ଦିଅନ୍ତି—"ଧୈର୍ଯ୍ୟ ଧର, ଉପରେ ଠାକୁର ଅଛନ୍ତି । ମୁଁ ସାଙ୍ଗରେ ଯିବି, ସବୁ ନିଜେ ଦେଖିଶୁଣି ବନ୍ଦୋବସ୍ତ କରି ଆସିବି ।"

ବୁଲର ଯିବାଦିନ ଆସିଲା । ସକାଳୁ ମାଉସୀ ଗୋସେଇ ଘରେ ଖଡ଼୍‌ଖାଡ଼୍‌ରେ ଲାଗିଥାନ୍ତି, ବାହାରି ଆସି ବୁଲା ପାଖକୁ ଟିକିଏ ଆସୁଥାନ୍ତି, ପୁଣି କେ'ଣ ସମ୍ଭୁଳା ପଡ଼ୁନଥାଏ, ଲେଉଟି ଯାଉଥାନ୍ତି । କୁନା ରଙ୍ଗଲଗା ଟ୍ରଙ୍କ ଖଣ୍ଡିକ ଆଣି ଦାଣ୍ଡଘରେ ରଖିଲା । ତା ମୁହଁ ଆଜି ଆଶ୍ୱସ୍ତ ପରିବର୍ତ୍ତେ କେମିତି ଉଦାସ ଦିଶୁଥାଏ । ବୁଲା ପ୍ରତି ବୈରଭାବ ସତେକି ଦିନକରେ ଉଭେଇ ଯାଇଥାଏ । ବୁଲର ଜିନିଷପତ୍ର ରଖାରଖି, ଖିଆପିଆ ସବୁକଥା ଆଜି ସେ ବୁଝୁଥାଏ ।

ମାଉସୀ ଗୋସେଇଘର ଦୁଆର ମୁହଁରୁ ପଚାରିଲେ—"ଚୂଡ଼ା ଗୁଡ଼ ଟିକିଏ ବାନ୍ଧିଦେବି ଭାବିଥିଲି ଯେ, ସେମାନେ ଧୁଆଧୋଇ କରି ଚକଟି ଦେବେ ତାକୁ ଖାଇବାକୁ ?"

ସାର୍‌ଙ୍କ ଗାମୁଛା ବାନ୍ଧୁଥିବା ହାତ ରହିଗଲା, ଆଖି ବି ସେମିତି ଚଉକାଠରେ ସ୍ଥିର । ବୁଲା ବହଲେଇ ସାଙ୍ଗରେ ଖେଳୁଥାଏ ।

ବାହାରେ ଗାଡ଼ି ରହିଲା । ଡାକ୍ତର ଆସିଚନ୍ତି, ନବ ଔଷଧ ଦେବେ ବୋଲିଲଗି । ସାଙ୍ଗରେ ସିପେଇ ବି ଥିବ ।

ସାଇପଡ଼ିଶାରୁ କେତେଜଣ ବନ୍ଧୁ ବି ଆସି ଠିଆ ହେଇଛନ୍ତି ।

ସମସ୍ତେ ଉଦ୍‌ବିଗ୍ନ । ମାଉସୀ ପୂଜାଘରୁ ବାହାରିଲେ, ଆଖି ଫୁଲି ଲାଲ୍ ଦିଶୁଚି । ଖିଆପିଆ ସରିଥିଲା । ସାର୍ ତିଆରି ହେଇ ସାଣିଥିଲେ । ପଚାରିଲେ—"କ'ଣ ହେଲା, ବାହାରିବା ଏଥର ?"

ମାଉସୀ ପଚାରିଲେ—"ତା' ଦିହପା ନେଇ କେତେଦିନରେ ସେମାନେ ଆମକୁ ଚିଠି ଦେଉଥିବେ ?"

ସାର୍ କହିଲେ—ପଚାରି ବୁଝିବି, କାହିଁ ଏମିତି ହେଉଚ ତମେ ?"

ମାଉସୀ ପଚାରିଲେ—"ଆମ ଚିଠି ପଢ଼ି ତାକୁ କିଏ ବୁଝେଇ-ଦେବ ? ମୁଁ କଅଣ କରିବି ?"

ସାର୍ ବଡ଼ ଥକା ଦିଶୁଥାନ୍ତି । ବେକ ମୁହଁ ପୋଛୁ ଉଠିଲେ, କହିଲେ—"ଯାଏ ଦେଖିଆସେ, ଗାଡ଼ିଟାରେ ସେମାନେ ବସିଚନ୍ତି ।"

ଦାଣ୍ଡିଆଡ଼୍ ସାର୍ ଫେରିଲା ବେଳକୁ ଏଣେ ମାଉସୀ ହେ ହେ ଡକାପାରି କାନ୍ଦୁଥାଆନ୍ତି । ଆମେ ସମସ୍ତେ ଭକୁଆ ପରି ଠିଆ ହୋଇଥାଉ ଆଖି ନାକ ପୋଛୁଥାଉ । କୁନା ମା' ପିଠିରେ ହାତଦେଇ ଧୈର୍ଯ୍ୟ ଦେବାକୁ ଚେଷ୍ଟା କରୁଥାଏ । ତା ମୁହଁଟା ଆଶ୍ଚର୍ଯ୍ୟ ଭାବେ କରୁଣ ଦେଖା ଯାଉଥାଏ, ମୁହଁ ତଳକୁ ପୋତିଥାଏ ସତେକି ତାକୁହିଁ ଦୋଷୀକରି ଏ ଦଣ୍ଡ ଦେବାକୁ ଯାଉଚି ।

ସାର୍ କ'ଣ କହୁଥିଲେ ଶୁଣାଗଲା ନାହିଁ, ମାଉସୀ ସେହି ସାଙ୍ଗରେ କାନ୍ଦି କହୁଥିଲେ—"ବିଷ ଟିକିଏ ଆଣିଦିଅ, ଖୋଇଦିଏଁ ତାକୁ ନିଜ ହାତରେ, ମରିଯାଉ । ମରିଯାଉ ସେ ମୋ' ଆଖି ଆଗରେ ।"

ସାର୍ ସେଇଟି ବସିପଡ଼ିଲେ ଖଟ ଉପରେ, ମୁଣ୍ଡଟି ନଇଁ ପଡ଼ିଥିଲା ଆଗକୁ ମେରୁଦଣ୍ଡ ତା ଭାର ସମ୍ଭାଳି ନ ପାରିଲା ପରି । ମୋ ବାପା ସାର୍‌ଙ୍କୁ ଭରସା ଦେଲେ, କହିଲେ—ହେବ ସେମିତି, ଟିକିଏ ସବୁର କରିଯାନ୍ତୁ । ପରେ ସବୁ ଠିକ୍ ହୋଇଯିବ ।”

ବାହାରେ ଗାଡ଼ି ହର୍ଣ୍ଣ ଦେଲା । ସାର୍ ଉଠି ମୁଣ୍ଡବାଳ ହାତରେ ସାଉଁଳିଲେ । ଅଉଜା କବାଟ ଖୋଲି ଦୁଆର ବନ୍ଧ ଧରି ଠିଆ ହେଲେ । ପୁଲିସ୍‌ବାଲା ଗାଡ଼ି କବାଟ ପାଖେ ଠିଆହୋଇ ହାତ ଘଡ଼ିକୁ ଅନାଉଥାଏ । ସାର୍ କହିଲେ "ପୁଅକୁ ଆଜ୍ଞା ରାତିରୁ ଜର ଥିଲା । ଏବେ ଦେଖିଲାବେଳକୁ ଖଇଫୁଟୁଛି ଦେହରେ । ଆଜି ଯିବା ଅସମ୍ଭବ । ଆଉ ଦିନାକେତେ ଯାଉ ପୁଣି ଯିବା ଠିକ୍ କରିବା, ମୁଁ ଯାଇ ଖବର ଦେବି ଆପଣଙ୍କୁ ।”

ବାହାରେ ଗାଡ଼ି ଚାଲିଯିବାର ଶୁଭିଲା ।

ଭିତରେ ବୁଲି ଧାଇଁ ପଳାଉଥିବା ବେଳେଇ ଆଡ଼କୁ କାନ୍ଥ-କଣ୍ଟାରେ ଟଙ୍ଗା ଦର୍ପଣ ଖଣ୍ଡିକ ଫୋପାଡ଼ି ଦେଲା ଯେ ଝଣ୍ ଝାଣ୍ ଭାଙ୍ଗିଗଲା କାଚଯାକ ।

ପରଦିନ ସାଇପଡ଼ିଶା ସମସ୍ତେ ଖବର ଜାଣିସାରିଥିଲେ ଯେ ଭଗବାନ ମାଷ୍ଟ୍ରଙ୍କ ପୁଅ ଘରଛାଡ଼ି କୁଆଡ଼େ ଚାଲିଯାଇଛି । ସମସ୍ତେ ରାତିରେ ଶୋଇଥିଲାବେଳେ କିଏ ବାହାରି ଯାଇଥିଲା କାହାକୁ କିଛି ନକହି । ମାଉସୀଙ୍କ ହାତବାକ୍ସରୁ ପଚିଶି ଟଙ୍କା ଆଉ ନୂଆ ରଙ୍ଗକଡ଼ି ଟିଣ ବାକ୍ସଟି ସାଙ୍ଗରେ ନେଇ ଯାଇଥିଲା ।

ଦିନର ସ୍କୁଲ ବନ୍ଦ ହେଲା । ପରି ଫଗୁଣରେ ମୁଁ ବାହାହୋଇ ଆସିଲାବେଳକୁ ତା ସାଙ୍ଗରେ ଶେଷ ଦେଖା, ସେତେବେଳକୁ ବୁଲି ଝରକା ଭିତରୁ ହାତ ଗଳେଇ ଖାତା ଖଣ୍ଡିକରୁ ପୃଷ୍ଠାଏ ଲେଖା ଚିରି ବାହାରକୁ ଫୋପାଡ଼ୁଥାଏ, ଦୂର ଆକାଶରେ ପହଁରୁଥିବା ଗୁଡ଼ିଟିଏ ଆଡ଼କୁ ଅନେଇ ଅନେଇ ।



# ଜହ୍ନରାତି

ମଞ୍ଜୁଶ୍ରୀ ଅତି ସଗର୍ବରେ, ପ୍ରାଣ-ସଖୀ ପରି ବିଶ୍ୱାସରେ, ସ୍ୱାମୀ ଆଗରେ ନିଜ ବିବାହ-ପୂର୍ବ ଜୀବନର ପ୍ରେମ କାହାଣୀ ଶୁଣାଇ ବସିବା ଘଟଣା ଏ ପ୍ରଥମ ନୁହେଁ । ପ୍ରତିଥର ତାର ସବୁ ସାବଧାନତା ସତ୍ତ୍ୱେ ଏମିତି ହିଁ ଘଟେ । ଏମିତି ସୁନିଶ୍ଚିତ ମହାଚୂପ ପାଦରେ ଅଘଟଣଟି ଆସେ ଯେ ପ୍ରତି ପଦକ୍ଷେପରେ ଅବାଞ୍ଛିତ କଥାଟିଏ ଘଟୁଛି ବୋଲି ବୁଝିବି ମଞ୍ଜୁଶ୍ରୀ କିଛି ହିଁ ପ୍ରତିକାର କରି ପାରେ ନାହିଁ । ପ୍ରତିରୋଧ କରିବାର ଅଭିଜ୍ଞ ମନ ଆଉ ଇଚ୍ଛାଶକ୍ତି ମଧ୍ୟ, ତାର କୁଆଡ଼େ ହଜିଯାଇଥାଏ । ଅକାତରରେ ସେ ଦେଇଦିଏ, ଯେତିକ ଅବଦାନ ତାର ଘଟଣାଟିକୁ ଦିଆଯିବା କଥା ।

ଆଜି ପୁଣି ଲମ୍ବା ସମୟ କଟୁନ ଥିବା ଦ'ପହରଟାରେ କୁନି ଝିଅର ଜାମାରେ ଫୁଲ ପକାଉ ପକାଉ ମଞ୍ଜୁଶ୍ରୀ ଅନେକବେଳୁ ସେଇ-କଥାଟାକୁ ଭାବି ହେଉଥାଏ । ଅଣ୍ଡା ମନରେ ଆପଣାକୁ ସତେ କି ବୁଝିବା ଲାଗି ଚେଷ୍ଟା କରୁଥାଏ । ଆଉ ଫନ୍ଦ ହୋଇ ଯାଇଥିବା ମେଞ୍ଚାଏ ସୂତାକୁ ସିଧା କରିବାକୁ ଚେଷ୍ଟା କଲାଭଳି ମନେ ପକଉଥାଏ—ତାପରେ ଠିକ୍ କୋଉ କୋଉ ଗଳି ବାଟେ କଥା ବୁଲି, କୋଉ ମୋଡ଼ ବାଙ୍କ ଖାଇ, ଶେଷରେ ନିଷିଦ୍ଧ ବିଷୟଟି ଲଗିଲା କେଜାଣି ?

ଗତକାଲିର କଥା—ଅଧ ରାତି ହେବ, ଝିଅର ମୁତକନ୍ଥା ବଦଳେଇବାକୁ ମଞ୍ଜୁଶ୍ରୀ ଉଠିଥିଲା । ନିଦ ମଳ ମଳ ଆଖିରେ ଦେଖିଲା ବେଳକୁ ଶେଯସାରା ଜହ୍ନ ପଡ଼ିଚି । ଗତ ସନ୍ଧ୍ୟାରେ ପବନ ଆସିବ ବୋଲି ଝର୍କା ପର୍ଦ୍ଦା ଟେକି ରେଲିଂ ଦେହରେ ଗୁଞ୍ଜି ଦିଆଯାଇଥିଲା, ଏ ଯାଏଁ ସେମିତି ଟେକା ହୋଇ ରହିଚି । ଖୋଲା ଝର୍କା ଦେଇ ଆକାଶ ଦିଶୁଥାଏ ।

ସେଥିରେ ଜହ୍ନ, ମେଘ, ଓ ରାସ୍ତା ଆର ପାଖ ଲମ୍ବା ଇଉକାଲିପଟ୍‌ସ୍ ଗଛଟା—ସତେ କି ତା କଲେଜ ଡ୍ରାମାରେ ପ୍ରେମ-ସିନ୍‌ର ବ୍ୟାକ୍ ଡ୍ରପ୍ ।

ବାସ୍ ସେତିକି । ସେଇ ମନେ ପକେଇ ଦେଉଥିବା ଦୃଶ୍ୟଟା ତାକୁ କଥା କୁହେଇବାକୁ ଏଡ଼େ ଅସ୍ତବ୍ୟସ୍ତ କରିପକେଇଲା ଯେ, ସେ ଭୁଲିଗଲା ଆଜି ରବିବାରଟାରେ ମାଂସ ତରକାରୀ ରାନ୍ଧି ଲାଗି ଯାଇଥିବାର ଲାଜ କଥା, ପାଖ ଖଟରେ ନିଦରେ ବଳବଳଉଥିବା ପୁଅକୁ କାଲି ସକାଳ ସାଢ଼େ ସାତଟାରେ ରେଡ଼ି କରି ଟାଇ-ଜୋତା-ବାକ୍‌ସ-ଟିଫିନ୍ ଭିତରେ ସହିତ ସ୍କୁଲ୍ ବସ୍‌ରେ ବସାଇବାକୁ ଥିବା କଥା; ଏମିତି କି ପାଖରେ ଶୋଇଥିବା ବିଜୟଙ୍କର ଏଇ ପାଞ୍ଚବର୍ଷ ଭିତରେ ଟିକଏ ମୋଟେଇ ଯାଇ ବେଶି ଦମ୍ଭିଲା ଦିଶୁଥିବା ଚେହେରା କଥା ।

ତେଣୁ ସେ କିଛି ଦିଶୁ ନ ଥିବା ଅନ୍ଧାର କୋଠରିଟିର ପାଖରେ ଶୋଇଥିବା ସଙ୍ଗୀଟିର ଦେହ ପାଖକୁ ଲାଗି ଆଉଜି ବସିଲା, ଆଉ ତା କାନ ବେକମୂଳେ ଆଙ୍ଗୁଠି ସଲସଲ କରି ତାକୁ ନିଦରୁ ଉଠେଇଲା । ତା ଇଚ୍ଛାମତେ କଡ଼ ଲେଉଟାଇ ତା'ଆଡ଼କୁ ମୁହଁ କରିଥିବା ବିଜୟଙ୍କୁ କହିଲା—କେଡ଼େ ନିଦରେ ଶୋଇଚ ମ ? କେଡ଼େ ଜହ୍ନ ପଡ଼ିଚି ଦେଖିଲଣି ?

ତାପରେ ବିଜୟଙ୍କର ନିଦ ଭାଙ୍ଗିବାକୁ ଓ କ୍ରମେ ଦୁହେଁ ପୁରୁଣା ଦିନର ସ୍ମୃତି ରୋମନ୍ଥନ କରିବାକୁ ବେଶି ଡେରି ଲାଗି ନ ଥିଲା । ମଞ୍ଜୁ କହି ଆଶ୍ଚର୍ଯ୍ୟ ହେଉଥିଲା କେମିତି ତା ସାଙ୍ଗ ଝିଅ ଦଳଟା ଜହ୍ନରାତିରେ ଛାତ ଉପରେ ଗୀତ ଗାଇ ଗାଇ ରାତି ପାହାନ୍ତା କରିଦିଅନ୍ତି । ଆଉ ବିଜୟ କହିଲା ପଢ଼ାଆରେ ଟୋକା ଦଳଙ୍କ ସାଙ୍ଗେ ସାରା ରାତି ଗୁଲି ଗପ କଥା, ଅଧରାତିରେ କ୍ୟାମ୍ପସ୍‌ର ରାସ୍ତା ରାସ୍ତା ବୁଲି ଝିଅଙ୍କ ବିଷୟରେ ଆଲୋଚନା କଥା । ଆଉ ଶେଷରେ ନିଦୁଆ ଗଳାରେ ଯୋଡ଼ିଲା—ଅଃ ସେତେବେଳେ ପାଖେ ପାଖେ ଟୋକା ଦଳଟା ନ ଥାଇ ଯଦି ତମେ ଥାଆନ୍ତ ନା ମଞ୍ଜୁ !

ମଞ୍ଜୁଶ୍ରୀ ଜାଣି ଶୁଣି ଫୁଲେଇ ଗଳାରେ କହିଲା—କାଇଁ, ମୁଁ ପାଖକୁ ଆସିଗଲା ପରେ କଣ ଗନ୍ଧେଇଲି ?

ବିଜୟର ସାଧାସିଧା ବେପରବାଏ ଉତ୍ତର—ନାଇଁ ଯେ, ବାହା ହେଲାରୁ ସିନା ପାଖକୁ ଆସିଲି, ହେଲେ ଆଉ ଜହ୍ନ ରାତେ ପଡ଼ିଆରେ ବୁଲିବାକୁ ଚାନ୍ସ ମିଳିଲା କେଉଁଠି ?

ଅଜବ ସତକଥା । କିଛି ଗମ୍ଭୀର ଦୁଃଖ କି ଅନୁଶୋଚନାର ନୁହେଁ, ଅଥଚ ହାଲୁକା ହସରେ ଉଡ଼େଇ ଦେଇ ହୁଏ ନାହିଁ ।

ବିଜୟ ଓ ମଞ୍ଜୁଶ୍ରୀ, ଦୁହିଁଙ୍କ ଜୀବନରେ ଏ ଯାଏ ବାସ୍ତବରେ ବୋଧହୁଏ ସେମିତି କିଛି ଘଟିନି—ଗମ୍ଭୀର ଦୁଃଖ ବା ହତାଶା ପାଇଲା ଭଳି । ସଞ୍ଜବେଳେ ଦିନେ ଦିନେ ଘରେ ତାସ୍ ଖେଳ ଜମିଥିଲାବେଳେ ମଞ୍ଜୁଶ୍ରୀ ଯେତେବେଳେ ଗରମ ପକୁଡ଼ିର ପ୍ଲେଟ୍ ନେଇ ପହଞ୍ଚେ, ବିଜୟ ତାସ୍ ବାଣ୍ଟୁ ବାଣ୍ଟୁ ତା ଉପରେ ଗର୍ବୋତ୍ଫୁଲ୍ଲ ହସଟିଏ ପକାଇ କହେ—ଓଃ ଗଡ୍ ! ଏରେଞ୍ଜଡ୍ ମ୍ୟାରେଜ୍‌ରେ ଲୋକ କେମିତି ଏଡ୍‌ଜଷ୍ଟ୍ କରନ୍ତି କେଜାଣି, ଆଜିକାଲି ଯୁଗରେ । ମୁଁ ଆଉ ମଞ୍ଜୁ, ଆମେ ପରସ୍ପରର ଚଏସ୍ ।

ବିଜୟ ସଙ୍ଗେ ମଞ୍ଜୁଶ୍ରୀର ପରିଚୟ ହେଲାଦିନୁଁ ଦୁହେଁ ପରସ୍ପରକୁ ନେଇ ଗର୍ବ ହିଁ କରିଛନ୍ତି । ପରିଚୟ ହୋଇଥିଲା ବିଜୟର କଲେଜ ଛାଡ଼ିବା ଦିନ । କଲେଜ ଷ୍ଟେଜ୍‌ରେ ମିଠା ଗଳାରେ ଗୀତ ଗାଉଥିବା, ଆଉ ବାରଣ୍ଡାରେ ବିଜୁଳି ଖେଳାଇ ବୁଲିଯାଉଥିବା ସୁନ୍ଦରୀ ଝିଅଟି ସାଥିରେ ପ୍ରଥମ ଓ ଶେଷ ଥର ପାଇଁ କଥା କହିବାର ସଙ୍କଳ୍ପ ନେଇ ବିଜୟ ଆସିଥିଲା ଓ ମଞ୍ଜୁଶ୍ରୀ ଆଗରେ ନିଜର ପରିଚୟ ଦେଇଥିଲା—ମୁଁ ବିଜୟ ପଟ୍ଟନାୟକ, କ୍ରିକେଟ୍ ଖେଳେ, ଜାଣିଥିବେ । ଆପଣଙ୍କର ସଙ୍ଗୀତର ମୁଁ ଜଣେ ଫ୍ୟାନ୍···ମାନେ ଏଇଆ କହିବାକୁ ଆସିଥିଲି ଯେ···ଆଉ ହୁଏତ କେବେ ଦେଖା ହେବ ନାହିଁ ଜୀବନରେ···ମୋର ରାଉରକେଲାରେ ଚାକିରି ହୋଇଯାଇଛି ।

ବିଜୟକୁ କ୍ରିକେଟ୍ ଖେଳାଳୀ ଭାବେ କିଏ ନ ଜାଣେ କଲେଜରେ ! ତା ବାପା ଜଣେ ବଡ଼ ଓକିଲ ଓ ତାଙ୍କର ଦୋ'ତାଲା କୋଠା ଅଛି । ଆଉ ଏବେ ପୁଣି ତାର ଚାକିରି ହୋଇଯାଇଛି ।

ଦୁଇଦିନ ପରେ ବିଜୟଠାରୁ ଚିଠିରେ ବିବାହ ପ୍ରସ୍ତାବ ପାଇ ମଞ୍ଜୁଶ୍ରୀ ଯେତେ ଖୁସି ହୋଇ ନ ଥିଲା, ତା'ଠୁ ଯଥେଷ୍ଟ ବେଶି ଖୁସି ହୋଇଥିଲେ ତା ମା ବିନ୍ଦୁଷ । ମଞ୍ଜୁଶ୍ରୀ ସତେ କି କେବଳ ଘଟଣା ସ୍ରୋତରେ ଭାସି ଯାଇଥିଲା ।

ବାହାଘରବେଳେ ମା ଭଉଣୀଙ୍କ ଗଦ୍‌ଗଦ୍ ସ୍ୱରରୁ ଓ ସାଥୀ ପଡ଼ୋଶୀଙ୍କ ବଧେଇ, ଈର୍ଷାରୁ ମଞ୍ଜୁ ବୁଝିପାରିଥିଲା, ଯାହା ଘଟିବାକୁ ଯାଉଛି ଜୀବନରେ ତା'ଠୁ ଅଧିକ ସେ କେବେହେଲେ ପାଇ ନ ଥାନ୍ତା । ବାହାଘର ପରେ ଦୁହେଁ ଆସି ରାଉରକେଲାର ସୁନ୍ଦର ଗ୍ରୁପଟିଆ ଫ୍ଲାଟଟିରେ ଘରକରଣା ସଜାଡ଼ିଲେ । ମଞ୍ଜୁଶ୍ରୀ ସବୁଦିନେ ସାଜସଜାକୁ ଭଲପାଏ; କଲେଜ ଦିନରେ ତାର ଗୋରା ଉଜ୍ଜଳ ତାଜଲ ଦେହଟିକୁ କେହି କେବେ ବିନା ଇସ୍ତ୍ରୀ ଶାଢ଼ୀରେ କିମ୍ବା ତାର ଗୋଲଆ ପିଲଳିଆ ମୁହଁଟିକୁ ତେଲିଆ; ଆଲୁର ଅବସ୍ଥାରେ ଦେଖିନାହିଁ । ଏଥର ବି ତାକୁ ନଜର ଆଉ ବିଜୟର ରୁଚିର ମଟିଆ ମଟି ରସ୍ତା ବାଛି ନେଇ ସାଜସଜ୍ଜା, ଘରକରଣା କରିବାକୁ କିଛି ଅସୁବିଧା ହେଲାନି । ତାର ଘଞ୍ଚ କୁଞ୍ଚୁକୁଞ୍ଚିଆ ବାଳକୁ ଅନାୟାସରେ ବାଟରେ ସଜେଇ ବବ୍ ବାଳର ଧାରଣା ଦିଆଯାଇପାରେ, ବାଳ କାଟି ଦେଇ ବିଜୟର ରୁଚିରେ ଆଘାତ ଦେବାର ପ୍ରୟୋଜନ ନାହିଁ ।

ସୁନ୍ଦର କଲୋନିଟିରେ ବସା ପଡ଼ିବା ପରେ ଯାଇ ମଞ୍ଜୁଶ୍ରୀ ପ୍ରଥମ କରି ଜାଣି ପାରିଥିଲା ବିଜୟ ଅନେକ ପୂର୍ବରୁ ତାର ପ୍ରଶଂସକ ଓ ପ୍ରଣୟ-ପ୍ରାର୍ଥୀ ଥିଲା ବୋଲି ।

—ତମେ ଖାଲି ସେଦିନର ଫଙ୍କ୍‌ସନ୍‌ରେ ଅଛ ବୋଲି ଜାଣିଲେ ମୁଁ ସଞ୍ଜବେଳୁ ସାମ୍ନା ଧାଡ଼ିରେ ସିଟ୍ ରଖି ବସେ, ଆଉ ତମ ପାର୍ଟଟିକ ସରିଗଲା ବୋଲି ଜାଣିଲେ ଆଉ ଜମା ବସି ପାରେନି, ସତ କହୁଛି ।

ବିଜୟ ଥଟ୍ଟା କରି ଆହୁରି ବି କହେ—'ହେଲେ ତମେ ଏକୁଟିଆ ଗାଇବା ଛାଡ଼ି ସେ ପଞ୍ଚାଏ ଲଫଙ୍ଗା ଟୋକା ଢଙ୍ଗୀ ଝିଅଙ୍କ ସାଙ୍ଗେ ଯାବତ୍ ହୋ ହୋ ହୋ—ଲ ଲ ଲ କୋରସ୍‌ଗୁଡ଼ାରେ କାହିଁକି ମିଶି କହୁଥିଲ ?

ଘରକରଣା ଓ ବିବାହିତ ଜୀବନର ଏକରକମ ନିର୍ଶ୍ଚିନ୍ତ ଦିନ-ଗୁଡ଼ିକ ବିତି ଯାଉଥିବା ବେଳେ ଦିନେ ଦିନେ ବିଜୟ କଥାରେ ଉତ୍ସାହ ପାଇ ମଞ୍ଜୁ ଗପି ପକାଏ—"କଣ ହେଲି ସେଥର ଜାଣ; ମାଳମା ନିଜ ଡାଏଲଗ୍ ତ ଘୋଷି ନ ଥାଏ । ପ୍ରମ୍ପଟିଂ ଶୁଣି ମୋ ଡାଏଲଗଗୁଡ଼ା କହି ପକେଇଲି ଷ୍ଟେଜ୍ ଉପରେ, ମୁଁ ଏଣେ କଣ କରିବି ବୁଝି ନ ପାରି ଦିଶୁନ—ସେଇ ଯେଉଁ ପାନ୍ଦ ବାବୁଙ୍କ ଡାଇରେକ୍ସନ୍‌ରେ ସୁବ୍ରି ଲମ୍ବା ଡ୍ରାମାଟିଏ ହେଇ ନଥିଲା ଆମ ସେକେଣ୍ଡ ଇୟର ବର୍ଷ ?"

ବିଜୟ କହେ—"ମନେ ଅଛି, ମନେ ଅଛି । ଯୋଉଥର ମକ୍‌ବୁଲ ତମ ବାପା ହୋଇଥାଏ ଆଉ ଝିଅ ଲୋ ଝିଅ ଲୋ କହି ଦଶଥର ଲେଖା ତମ ପିଠି ଆଉଁସୁଥାଏ ।"

—"ଦଶଥର କୋଉଠି ମ, ଥରେ ତ ! ହେଲେ ରିହର୍ସାଲ ବେଳେ ଦିନେ ବି ଆଉଁସି ନ ଥିଲା, ସ୍ମରଣ ଅଛି । ଷ୍ଟେଜ୍ ଉପରେ ମୁଁ ଆଉ କଣ କରିଥାନ୍ତି କହିଲ ?"

ବିଜୟ ଡ୍ରାମା କଲା ପରି ସ୍ୱରଭଙ୍ଗୀ କରି କହେ—"ଆହା ! ମୋତେ ମକ୍‌ବୁଲର ରୋଲଟା ଭଲ ମିଳିଥାନ୍ତା, ଷ୍ଟେଜ୍ ଉପରେ ଅପତ୍ୟ ସ୍ନେହର କେମିତି ଫୁଆରା ଛୁଟେଇଥାନ୍ତି ଦେଖିଥାନ୍ତ ।"

ମଞ୍ଜୁ ଖିଲି ଖିଲି ହସେ ଓ ବିଜୟ ପାଖକୁ ଲଗିଯାଇ ଆହୁରି ମଜା କଥାଟିଏ କହିବ ବୋଲି ମୁହଁ ଖୋଲେ । ହେଲେ କହେ ନାହିଁ । ହୁଏତ ରହିଯାଏ, ବାଆଁରେଇ ଦିଏ—କାରଣ ସେତେବେଳକୁ କୋଉଠି ପତଳା ପିନ୍ ପିନ୍ କାଚ କାନ୍ଥଟିଏ ଥିବାର ସେ ସୁରାକ୍ ପାଏ, ଜାଣେ ଯେ ଆଉ ଟିକିଏ ପାଖେଇଲେ ହାତ ବାଜିବାର ଆୱାଜ୍ ଆସିବ, କୋଳା-କୋଳି ହୋଇ ଏକାକାର ହେଇ ଯିବାକୁ ବସିଲେ କାଚ ଭାଙ୍ଗି ଖଣ୍ଡିଆ ଖାବରା କରିଦେବ ।

ବେଳେବେଳେ କିନ୍ତୁ ଏମିତି ବି ହୁଏ ଯେ ମଞ୍ଜୁ ସେ ଠଣଠାଣ ଆୱାଜ ଶୁଣିପାରେ ନାଇଁ । ଅଥବା ବିଜୟର ବେଳେବେଳେ କେଜାଣି

କେଉଁ କାରଣରୁ ସ୍ୱାଭାବିକ ଖେଳୁଆଡ଼୍ ମୁଡ୍ ଆସିଯାଏ, ସେ ମଞ୍ଜୁକୁ ବାଆଁରେଇବାକୁ ଦିଏ ନାହିଁ ।

କାଲିର କଥା ।

—"ଶୋଇଲଣି କି ମଞ୍ଜୁ !"

—"ନାହିଁ ତ ।"

—"ମୋ ନିଦଟା ଭାଙ୍ଗି ଦେଲ, ଏଣେ ନିଜେ ଶୋଇଲଣି ।"

—"ଶୋଇନି ମ ।"

—"କଥାଟିଏ କହ, ମଜା କଥାଟିଏ ।"

—"କି ମଜାକଥା କହିବି ?"

—"ତମ ହଷ୍ଟେଲ କଥା, ସାଙ୍ଗମାନଙ୍କ କଥା କହ । ପୁଅ ସାଙ୍ଗମାନଙ୍କ କଥା ବି ।"

ମଞ୍ଜୁ ନିଜେ ସାବଧାନ ହେବା ଗୁଡ଼ ଏଥର ଟପିକ୍‌ଟାକୁ ନେଇ ଆଉରି ଖେଳ ବସିଲି--"ତମେ କହ । ତମର ତ ଜହ୍ନରାତିରେ କୋଉ ଝିଅକୁ ନେଇ ବୁଲିବାର ଏତେ ସଉକ ଥିଲି ।"

—"ସଉକ ଥିଲେ କଣ ହେବ । ତମେ ତ ମୋ ସ୍ୱଭାବ ଜାଣିଚ, ଆମ ଘର କଥା ବି ଜାଣିଚ ।"

—"ଭଲଲେଇ ହୁଅନି । ଥରେ କହୁ ନ ଥିଲ ତମ ଘରେ, ଖରାଦିନ ହୋଇଥାଏ । ତମର କୋଉମାନେ ସବୁ କୁଣିଆ ଆସିଥାନ୍ତି......"

—"ଓହୋ ! ହେଲା ହେଲା, ମନେ ପଡ଼ିଲା । କହିଚି ତ ଥରେ, ଆଉ କଣ ? ହେଲା ଏଥର ତମ କଥା କହ ।"

—"କେଉଁ କଥା ତମକୁ ମୁଁ କହିବି ଯେ ପଚାରୁଚ ?"

—"ଏଇ କଥା ତ କହିବ । ଜହ୍ନରାତିରେ କେବେ କୋଉ ପୁଅ ସଙ୍ଗେ ବୁଲିନ ?"

"ନା ।"

—"ଏଃ, ନାଆଁ ନା ! ତମର ତ ଗୋଟାଏ ବାଡ଼ାଲିଅନ ଉପାସକ ଥିଲେ ।"

ଏମିତି କହିଲାବେଳେ ବିଜୟର ସ୍ୱରରେ ପ୍ରଶଂସା ନା ଅଭି-ଯୋଗ କାହାର ମାତ୍ରା ବେଶି ଥାଏ ମଞ୍ଜୁ ବୁଝିପାରେ ନାହିଁ । ଅଥଚ ପାଖରେ ବିଜୟ ଦେହର ନିବିଡ଼ ଉଷୁମ, ବାଳ ଉପରେ ବିଜୟ ହାତର ନିର୍ଣ୍ଣିତ ଆଶ୍ୱାସନା, ବ୍ୟଗ୍ର ବିଶ୍ୱସ୍ତ ସ୍ୱର କାନ ପାଖରେ—"କହନା ମଞ୍ଜୁ । ମୁଁ ଜାଣି ନ ଥିବା ତମର ବାହାଘର ଆଗର ଦିନମାନଙ୍କର ଟିକିନିଖି କଥା, ଯେତେବେଳେ ମୁଁ ତମର କେହି ନ ଥିଲି, ତମର ସେତେବେଳର ଗୋଟିଏ ଅଧେ ଅନ୍ତରଙ୍ଗ ମୁହୂର୍ତ୍ତର କଥା ଜାଣିବାକୁ ଇଚ୍ଛା ହୁଏ ।"

ମଞ୍ଜୁ ରାତ କାନ୍ଥର ଅଣ୍ଟିସ୍ଥିକର ଠିନ୍‌ଠାନ୍ ଘଣ୍ଟି ଶୁଣି ଆଗରେ କେଉଁ ଅନ୍ଧାରୁଆ କୂଅର ଆଶଙ୍କା କରିବ, କି ସାମ୍ନାରେ ବିଛା ଯାଇଥିବା ସବୁଜ ଡାକପଥରେ ବିଶ୍ୱାସ କରିବ ଭାବୁ ଭାବୁ ବିଜୟ ପଚାରି ବସିଲା- "ମଞ୍ଜୁ, ରମେଶ ସାଙ୍ଗରେ ତମେ କେବେ ଜହ୍ନରାତିରେ ବୁଲିନ ?

—"ଧେତ୍" ସବୁବେଳେ ଗୋଟାଏ--ମଞ୍ଜୁର ଏଥର ଗଳାରେ ଟିକିଏ ଭାରିପଣ ଆସି ଯାଇଥାଏ ।"

—"ଧେତ୍ ଫେତ୍‌ରେ ଚଳିବ ନାହିଁ । ସତ କୁହ, ମୋ ସୁନାଟି । ମୁଁ ଜମା ରାଗିବି ନାହିଁ । ଏଇ କଥାଟି ପଚାରିବାକୁ ମୋତେ କେବେ ଷ୍ଟ୍ରାଇକ୍ କରିନାହିଁ । ସତରେ ରମେଶ ସାଙ୍ଗେ ତମେ କେବେ ଜହ୍ନରାତିରେ ବୁଲିନ ?"

—"କେବେ ନୁହେଁ ।"

—"ଏମିତି ଚଡ଼ିଯାଉଚ କଣ ମ । ଖୁସିରେ କହ, ମନେ ପକେଇ କହ, ମୋ ସୁନାଟି ।"

—"ବୁଲନାଇଁ ପରା କହିଲି ।"

—"କଣ ତେବେ ପ୍ରେମ କରୁଥିଲ ମ ?"

—"କେବେ କହିଲି ପ୍ରେମ କରୁଥିଲି ବୋଲି ?"

—"ନ କହିଲେ କଣ ହେଲା, ମୁଁ ଜାଣିନି ?"

—"ବେଶ୍ ଜାଣିଚ ତ, ଆଉ କଣ ?"

—"ତମେ ଚଡ଼ୁଚ ମଞ୍ଜୁ, ମଡ଼'ର କରିଦେଉଚ ମୁଡ୍‌ଟା ।"

ମଞ୍ଜୁଶ୍ରୀ ନୀରବ ରହିଲା । ବିଜୟ ଟିକିଏ ରହି ରହି କହିଲା—

—"ରମେଶ କିନ୍ତୁ ବଡ଼ ଜୋର୍ ତମ ପ୍ରେମରେ ପଡ଼ିଯାଇଥିଲା, ନୁହେଁ ?"

—"ତମକୁ ତ ସବୁ ଜଣା ।"

—"ସାରା କଲେଜକୁ ଜଣା ଥିଲା । ତମର ବି ତ ପ୍ରେମ ହୋଇ ଯାଇଥିଲା, ଖାଲି ତମ ମହାଚଣ୍ଡୀ ହଷ୍ଟେଲ୍ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ଡର—

—"ସବୁ ଜାଣିଥିଲ ତ, ବାଧା ହେଲ କାହିଁକି ?"

—"ଭାବିଲି ମିଛ ହୋଇ ଥିବ । ସତ କହିଲ, ନ ଥିଲା ?"

—"ଜମା ନୁହେଁ, ଖାଲି ଫ୍ରେଣ୍ଡ୍‌ସିପ୍ ଥିଲା ।"

—"ସେଇଆକୁ ମାଇଲ୍ଡ୍ ପ୍ରେମ କୁହାଯାଏ ।"

—"ତମେ ଜାଣିଥିବ ।"

—"ମୁଁ ତ ଖାଲି ପ୍ରଚଣ୍ଡ ପ୍ରେମ କଥା ଜାଣିଛି ।"

କନା ଉପରେ ଗଣ୍ଠି ପକାଇ ଦାନ୍ତରେ ସୂତା ଛିଡ଼ାଇ ମଞ୍ଜୁ ଦୀର୍ଘଶ୍ୱାସ ଛାଡ଼ିଲା । ଆନ୍ତରିକତା, ବିଶ୍ୱାସର ଏଇ ପାହାଚରେ ପହଞ୍ଚିଲା ପରେ କୁଆଡ଼କୁ ମୋଡ଼ିବାକୁ ହୁଏ ? କଲେଜ ଜୀବନ—ସାରା କଲେଜରେ ତ ମାତ୍ର ଚାରି ଛଅ ଯୋଡ଼ି ପ୍ରେମ କରନ୍ତି ବା ଅନ୍ୟମାନଙ୍କୁ ଦେଖାଇବାର କରି ରାସ୍ତାରେ ଏକାଠି ଚାଲନ୍ତି । ବାକି ପିଲାଏ କେବଳ ଗୁଜବ ମଧ୍ୟରେ ଆନନ୍ଦ ନିଅନ୍ତି । ରମେଶ ସାଙ୍ଗରେ ମଞ୍ଜୁର ପ୍ରେମ ହେଉ ବା ନ ହେଉ, ସାରା କଲେଜ ଜାଣିଥିଲା ପ୍ରେମ ବୋଲି । ବିଜୟ ବି ଜାଣିଥିଲା । ବାହାଘର ପରେ ମଞ୍ଜୁ କେବେ ବିଫଳ ପ୍ରେମ ଲାଗି ଅନୁତାପ କରିନି, କିମ୍ବା ବିଜୟ ପାଖେ ନିଜକୁ ଅପରାଧୀ ବୋଲି ମନେ କରିନି । ରମେଶ ସାଙ୍ଗେ ତା ବାହାଘର ହୋଇପାରି ନ ଥାନ୍ତା ବୋଲି ସେ ମୂଳରୁ ଜାଣିଥିଲା—ରମେଶ କହିଥିଲା ସେମାନେ ନୈଷ୍ଠିକ ବ୍ରାହ୍ମଣ ବୋଲି । ତାର ଆଉ ରମେଶର ସମ୍ପର୍କ ବିଷୟରେ ବିଜୟ କେବେ ପ୍ରଶ୍ନ ପଚାରିଲେ, ଜଥାଟିକୁ ବିଜୟ କେମିତି ଗ୍ରହଣ କରିବ, ସେଥିପ୍ରତି ସିଏଁ କେବଳ ସତର୍କ ରହି ଉତ୍ତରରେ ସତ୍ୟର ମାତ୍ରା କମ୍ ବେଶି କରିଛି ମଞ୍ଜୁଶ୍ରୀ । ତେବେ ହଁ, ଚାଲିଯାଇଥିବା ଦିନଗୁଡ଼ିକର ଆହୁରି ଅନେକ ଅନ୍ତରଙ୍ଗ ସ୍ମୃତି ପରି, ରମେଶ ବି ପ୍ରାୟ ମନେ ପଡ଼େ ।

ବିଜୟ ଆଗରେ ନିଜ ମନକୁ କେବଳ ଖୋଲି ଦେବାର ଇଚ୍ଛାରୁ ସିଏଁ ନୁହେଁ, ସବୁଦିନ ଲାଗି ବିତିଯାଇଥିବା ମୁହୂର୍ତ୍ତର ରୋମାଞ୍ଚକୁ ହୁଏତ ପୁଣି ଥରେ ବଞ୍ଚିବାର ଲୋଭ ଛାଡ଼ିପାରେ ନାହିଁ ମଞ୍ଜୁ, ତେଣୁ ଆରମ୍ଭ କରେ—"ସେଥର କଲେଜର ଏନୁଆଲ୍ ଡ୍ରାମାରେ ମୁଁ ହିରୋଇନ୍ ହୋଇ ନ ଥିଲି—"

—"ମକ୍‌ବୁଲ୍ ତମ ବାପା ହୋଇଥିଲା ?"

—"ନା ମ, ମୋ ଥାର୍ଡ଼ ଇଅର୍ ବର୍ଷ ଯୋଉ 'ଶ୍ରାବଣୀ' ବୋଲି ଡ୍ରାମାଟା ହୋଇଥିଲା—"

—"ଧାପକ ହବେ ହେଇଥିଲ ନା ?"

—"ରମେଶ ହବେ ହେଇଥିଲ, ତମର ମନେ ନାହିଁ ସତରେ ?

—"କହ କହ ମନେ ପଡ଼ିଯିବ ।"

—"ସେଥର ବୁଲ ପଟ୍ଟନାଏକ ଦଳର ପିଲା କଲେଜ ଇଉନିଅନ୍‌ର ଡ୍ରାମା କରେଇ ଦେବେନି ବୋଲି ଧମକ ଦେଇଥିଲେ, ମନେ ନାହିଁ ? ଆମେ ପ୍ରଥମରୁ ମେକ୍‌ଅପ୍ ହେଇ ବସିଥାଉ, ପ୍ରଥମ କୋରସ୍ ପରେ ଆମ ଡ୍ରାମା ଥାଏ..."

—"କୋରସ୍‌ରେ ତମେ କେମିତି ନ ଥିଲ ? ତମେ ତ ସବୁ ହୋ ହୋ—ଲ ଲ ରେ ଡୁବିଯାଇଥାଅ—"

—"ତମେ ଖାଲି ଥଟ୍ଟା କଲେ ମୁଁ କହିବିନି ।"

—"କହ କହ ।"

—"ବୁଲ ପଟ୍ଟନାଏକ ଦଳ କୋରସ୍ ନ ସରୁଣୁ ସତରେ ଗୋଳମାଳ ଆରମ୍ଭ କରିଦେଲେ । କୁଆଡ଼େ ଯାଇ ଲାଇନ କାଟି ଦେଲେ—ଆମେ ଡର ଗୁହଆଁ ହେଇଗଲୁ ପ୍ରଥମେ । ପୁଣି ମହାନ୍ତି ବାବୁ ହେରିକା ଆସି ଆମକୁ କହିଲେ ଡରିବାର କିଛି ନାହିଁ, ସବୁ ଠିକ୍‌ଠାକ୍ ଅଛି, ଲାଇଟ୍ ଆସିଯିବ ପାଞ୍ଚ ଦଶ ମିନିଟ୍‌ରେ ।

—"ଷ୍ଟେଜ୍ ପଛ ପାଖ ଦେଇ ଲମ୍ବ ବାରଣ୍ଡାଟା ଯାଇଥାଏ, ସେଇଠି ଆଉ ତା ପଛପାଖ ପଡ଼ିଆରେ ଆମେ ସବୁ ବୁଲୁଥାଉ । ରମେଶ ଆଉ ମୁଁ ଡାଏଲଗ୍ ସବୁ ମନେ ପକାଉ ଥାଉ । ଏତେ ଜହ୍ନ ଆଲୁଅ ଯେ ଫର୍ଚ୍ଚା ଦିଶୁଥାଏ ଚାରିଆଡ଼ । ଦେବଦାରୁ ଗଛର ପତ୍ରମାନ ବି ଚକ୍‌ଚକ୍ ସଫା ଦିଶୁଥାଏ । ରମେଶ କହିଲା—ଦେବଦାରୁ ପତ୍ର ଦେଖିଲେ ମୋତେ ତମର ମୁଣ୍ଡ ବାଳ ମନେ ପଡ଼େ ।"

ମଞ୍ଜୁ କଥା ବନ୍ଦ୍ କଲା ଓ କିଛି ବେଳ ଚୁପ୍ ଚାପ୍ ରହିଲା ପରେ ହଠାତ୍ କହିଲା—"ସେଇଠୁ" ?

—"ଆମେ ଚାଲୁ ଚାଲୁ ଲାଇବ୍ରେରୀ ପଛ ଯାଏ ଚାଲି ଆସିଥାଉ, ମୁଁ କାର୍ଡିଗାନ୍‌ଟା ଗୁଡ଼ ଆସିଥାଏ ଗ୍ରୀନ୍‌ରୁମ୍ ପାଖେ। ଭାରି ଶୀତ ହେଉ ଥାଏ। ମୁଁ ହ'ହାତ ଦେହରେ ଜାକ କହିଲି—ଭାରି ଶୀତ । ମୋ ଦାନ୍ତ ଠକ୍ ଠକ୍ ବାଜିଲା। ରମେଶ ତା କୋଟ୍ ଖୋଲି ମୋ ପିଠି ଉପରେ ଘୋଡ଼େଇ ଦେଲା,…ଆଉ ମୋ ପିଠି ପାଖରୁ ହାତ ଗୁଡ଼େଇ କହିଲା—"ଆଜିର ଶୀତ ହେଉଛି।

—"ତା ପରେ ?"

—"ତା ପରେ ମୁଁ ଘଡ଼ି ଦେଖିଲି, ବେଳ ହୋଇ ଯାଇ-ଥିଲା। କାଳେ ଅନ୍ୟମାନେ ଆମକୁ ଖୋଜୁଥିବେ ବୋଲି ଆମେ ଫେରିଲୁ।"

—"ସେତିକିରେ ? ଆଉ ଟିକିଏ ନାକୁ ଲୁଚଉଛ।"

—"ଆଉ କଣ ?"

ମଞ୍ଜୁ କାନରେ ଫୁସ୍ ଫୁସ୍ କରି ବିଜୟ ପଚାରିଲା—"ରମେଶ କିସ୍ କରିଦେଲା କି ? ମୋ ରାଣ, କୁହ, ଏତେ ଦିନ ପରେ ମୁଁ ଜମା ମାଇଣ୍ଡ୍ କରିବି ନି।"

—"ନାଇଁ ନାଇଁ, ବିଶ୍ୱାସ କର, ଖାଲି ମୋ ହାତ ଧରି ପକାଇ ଥିଲା।"

—"ସେତିକି ? ମୋ ଦେହ ଛୁଇଁ କହୁଛ ?

ମଞ୍ଜୁଶ୍ରୀ ଅନୁଭବ କଲା ତାର ଦେହ ହାତ ଶକ୍ତ ହୋଇ ଆସୁଛି। ବିଜୟ ଦେହରେ ପଡ଼ିଥିବା ହାତ ଆପେ ମୁକୁଳି ଯାଇ ଫେରି ଆସୁଛି। ବଦଳିଲା ସ୍ୱରରେ କହିଲା—"ସେମିତି ରାଣ ପକେଇଲେ ମୁଁ କହୁ କହିବିନି। ତମେ କହିଥିଲ ରାଗିବନି ବୋଲି ?"

—"କିଏ କହିଲା ମୁଁ ରାଗିଛି ? ପାଖକୁ ଘୁଞ୍ଚି ଆସ ଆଉ ଟିକେ।"

ପର ଦିନ ସକାଳେ ମଞ୍ଜୁଶ୍ରୀର ଆଖି ଖୋଲିଲା ବେଳକୁ ବିଛଣାରେ ଖବର ପଡ଼ିଲାଣି । ବିଜୟ ଗାଧୁଆ ପାଧୁଆ ସାରି ଦର୍ପଣ ପାଖେ ସାର୍ଟ ବୋତାମ ଲଗଉଛି । ମଞ୍ଜୁଶ୍ରୀର ଗ୍ଲାନି ସ୍ମୃତି କନା ହେଲା, ଭୁଲ୍ ମାଗିଲା ପରି ସ୍ୱରରେ କହିଲା—"କେତେ ଡେରି ଯାଏଁ ଶୋଇଗଲି ମ, ଉଠେଇ ଦେଲ ନି ।"

ବିଜୟ ଦର୍ପଣ ଭିତରେ ନିଜକୁ ଅନେଇ ରହି କେବଳ ଗମ୍ଭୀର ହୁଁ ଟିଏ କଲା ଓ ଅନେକ ଦିନ ତଳେ ଘୋଷିଥିବା ବୀଜଗଣିତର ସୂତ୍ରଟିଏ ପରି ମଞ୍ଜୁଶ୍ରୀ ଦେଖିଲା ମାତ୍ରେ ଚିହ୍ନି ପାରିଲା; ଦର୍ପଣରେ ବିଜୟର ସଦ୍ୟ ଖିଅରକରା ସତେଜ ମୁହଁ—କାହାର ଫଟୋଟିଏ ପରି ସ୍ଥିର ରେଖାଙ୍କିତ ।

ମଞ୍ଜୁଶ୍ରୀ ପପୁକୁ ସ୍କୁଲ ପାଇଁ ତିଆର୍ କରିସାରି ଉର୍ଦ୍ଧ୍ୱଶ୍ୱାସ ହୋଇ ଜଳଖିଆ ପ୍ଲେଟ୍ ସଜାଡ଼ି ଟେବୁଲ୍‌ରେ ଥୋଇଲା ବେଳକୁ ବିଜୟ ଜୋତା ପିନ୍ଧୁ ପିନ୍ଧୁ କହିଲା—ତା ସ୍ୱରଟା ଏତେ ବେପରୱାଏ ଯେ ଅସ୍ୱାଭାବିକ ମନେ ହେଉଥାଏ—"ଦେଖ୍ଟା ଭଲ ଲାଗୁନି, ଖାଇବନି ଭାବୁଚି ।"

"କଣ ହେଲା ଦେହ ? ଖଣ୍ଡିଏ..."

—"ପ୍ଲିଜ—ଡେରି ବି ହୋଇଗଲାଣି ।"

ଓ ବିଜୟ ଗାମ୍ଭୀର୍ଯ୍ୟର ରେଖାଙ୍କିତ ଚେହେରା ନେଇ ବାହାରି ଗଲା । ଜଳଖିଆ ଥାଳିଆ ଧରି ଠିଆ ହୋଇ ମଞ୍ଜୁଶ୍ରୀ ଭାବିଲା, ଏବେ ସିଏ ନିଜେ ଜଳଖିଆ ଖାଇଲେ କି ନ ଖାଇଲେ କାହାରି କିଛି ଯାଏ ଆସେନା । ତେବେ କିଛି ବେଳ ଭିତରେ ସିଏ ଗାଧୁଆ ପାଧୁଆ ସାରି ଯଥାବିଧି ପାଉଡର ସିନ୍ଦୂର ମାରି ଗୃହିଣୀର କାମ ତଦାରଖ ତଥା ଘର ସଜଡ଼ା ଆଦିରେ ଲାଗିଗଲା । ପଡ଼ୋଶିଣୀ ମିସେସ୍ ମହାନ୍ତି ଏମିତି ସକାଳ ବେଳା ଦିନା ନୋଟିସ୍‌ରେ ବୁଲିବାକୁ ଚାଲି ଆସନ୍ତି । ଅସନା ଘର ଅପରିଚ୍ଛନ୍ନ ବେଶବାସ ଦେଖିଲେ ଶ୍ୟେନ ଦୃଷ୍ଟିରେ ଶୋଷି ନେବେ ପରମ ସନ୍ତୋଷରେ ।

ବିପଦବେଳରେ ବିଜୟ ପାଇଁ ଲଞ୍ଚ୍ ଡବା ପଠେଇ ଦେଇ ମଞ୍ଜୁଶ୍ରୀ ସିନେଇରେ ଲାଗି ଯାଇଥିଲା । କିନ୍ତୁ ଥରକୁ ଥର ଛୁଞ୍ଚରୁ ଖସୁଥିବା ସୂତା ଗଳେଇ ଓ ଫନ୍ଦ ହେଉଥିବା ସୂତାର ଗଣ୍ଠି ଫିଟେଇ ଏତେ ବିକ୍ତର ହୋଇଗଲା ଯେ ଛୁଞ୍ଚଟା କନାରେ ମାରି ଦେଇ ଦୂରକୁ ଠେଲିଦେଲା । ତା ପରେ ଅବାକ୍ ହେଲା ଏଇଆ ଭାବି ଯେ ପ୍ରଥମଥର ସ୍ୱାମୀକୁ ଶୁଣାଇଲା ଭଳି ନୂଆ ପ୍ରେମାଞ୍ଚକର କଥାଟିଏ ସେ ତାର ବିସ୍ମୃତ ପ୍ରାୟ ଘଟଣା-ବହୁଳ ପ୍ରେମ-ଜୀବନରୁ ଆବିଷ୍କାର କରେ କେମିତି ? କେଉଁଥିପାଇଁ ଏମିତି ଅଜବ ପରିସ୍ଥିତିଟିଏ ସୃଷ୍ଟି ହୁଏ ? ଆତ୍ମୀୟତାର ନିବିଡ଼ତାକୁ ପରଖିବାର ଦୁର୍ବାର ଇଚ୍ଛାରୁ, ନା ଟିକ୍କଣ ଝିଡ଼ା ପୋଛି ଖାଇବାର ନିସ୍ତବ୍ଧତାକୁ ତାଳି ଫୋଟକାଟିଏରେ ମୁହୂର୍ତ୍ତିକ ଲାଗି ଭାଙ୍ଗି ଦେବା ପାଇଁ ?

ପରଦିନ ସନ୍ଧ୍ୟାରେ ବିଜୟ ସୁଟକେଶ ସଜାଡ଼ୁ ସଜାଡ଼ୁ କହିଲା —"ମ୍ୟାଚ୍ ଅଛି କଟକରେ, ଆଜି ରାତି ବସରେ ଯାଉଛୁ ଆମେମାନେ, ଶନିବାର ଫେରିବୁ ।"

ମଞ୍ଜୁଶ୍ରୀ ଆହତ ହେବାର ଭାବ ଦେଖାଇଲା ନାହିଁ, କେବଳ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା ପରି ପଚାରିଲା—"ହଠାତ୍ ଖବର ଆସିଲା କି ? କିଛି କହି ନଥିଲ ତ ?"

ବିଜୟ ତା ସ୍ପୋର୍ଟସ୍ ପେଣ୍ଟ୍ ଭାଙ୍ଗି ରଖୁଥିଲା । ତାର ସେଭିଂ-ସେଟ, ସାବୁନ ଡବା, ପାଖରେ ଥୋଇ ମଞ୍ଜୁଶ୍ରୀ ଅନେକ ଦୋଦୋପାଞ୍ଚ ପରେ ପଚାରିଲା—"ତମେ ବି ତ ମୋ ଦେହରେ ହାତ ଦେଇ କହିଥିଲ ରଗିବ ନାଇଁ ବୋଲି, କହିଲ ଏତେଦିନ ପରେ କିଛି ଯାଏ ଆସେ ନାଇଁ, ପୁଣି ଏମିତି ରଗିବା କଣ ଉଚିତ୍ ହେଉଚି ?"

ବିଷୟ ବସ୍ତୁଟି ଆଦୌ ବୁଝିପାରି ନଥିବା ଭଳି ବିଜୟ ଆଶ୍ଚର୍ଯ୍ୟ ମୁହଁ କଲା । ତା'ପରେ ଖଟାକ୍କିନି ସୁଟକେଶ ବନ୍ଦ କରି କହିଲା—"ପ୍ରତି ଥର ତମଠୁ ନୂଆ ନୂଆ କଥା କେମିତି ବାହାରେ ?"

ଗୁ ଡିଆରି କଲାବେଳେ ଗାଲ ଉପରେ ଓଠଯାଏ କହିଯାଉଥିବା ଗରମ ଲୁହ ଦେଇ ଚୁଲିର ଜାଳ ନିଆଁକୁ ଅନେଇ ମଞ୍ଜୁଶ୍ରୀ ମନେ ମନେ

ଆତୁର ଅନେକ ଥର ପରି ପ୍ରତୀକ୍ଷା କରୁଥିଲା—ଖୁସି ଉଚ୍ଛ୍ୱାସର ମୁହୂର୍ତ୍ତରେ ବା କଦବା ଜନ୍ମତିଥିଏରେ ଓଠରୁ ଖସିପଡ଼ିଥିବା କେଇପଦ ଉପରେ ଭରସା କରିବୁନ । ବିଜୟର ବା ଦୋଷ କଣ ? ଦିନ ଆଲୁଅରେ ତା'ଠୁ ବଡ଼ ତା ସ୍ୱାମୀପଦ ।

ବିଜୟ ଜୋତା ପିନ୍ଧୁ ପିନ୍ଧୁ ତରବରରେ ଚା ପିଇଲା ଓ "ଆଚ୍ଛା ଚାଲିଲି" କହି ସୁଟକେଶ୍ ଧରି ବାହାରି ଯିବାଯାଏ ଥରେହେଲେ ମଞ୍ଜୁଶ୍ରୀ ସହିତ ଆଖି ନ ମିଳେଇ ଘର, ବାରଣ୍ଡା, ପାହାଚ, ସରୁ ରାସ୍ତା ଓ ଫାଟକ ପାରି ହୋଇଗଲା ।

ପର ତିନିଦିନ ମଞ୍ଜୁଶ୍ରୀ ବାଡ଼ିଗଛରୁ ପିଜୁଳି ପାରି ଜେଲି ତିଆରି କଲା । ପଡ଼ୋଶୀ ମିସେସ୍ ବୋଷଙ୍କ ଘରେ ବସି ନୂଆ ଏଲ୍. ପି. ରେକର୍ଡ଼ ଶୁଣିଲା ଓ ପପୁର ପୁରୁଣା ପାଠଯାକ ରିଭିଜନ୍ କରାଇଲା ଆସନ୍ତା ପରୀକ୍ଷା ଲାଗି ।

କେତେଥର ଚିଠି ଲେଖିବ ବୋଲି ବସି ଜାଣିପାରିଲା ନାହିଁ ଯେ କାହାକୁ ଲେଖିବ । ତାର ଦୁଇ ଭଉଣୀ ବାହା ହୋଇ ଘର ସଂସାର କଲେଣି, ନର୍ସ ଗୃହକର୍ମରେ ଚିରବ୍ୟସ୍ତ ମା'ଆ ଏତେଦିନକେ ନିଶ୍ଚିନ୍ତରେ ଟିକିଏ ଶୋଇ ପାରୁଥିବ ଝିଅମାନଙ୍କ ବୋଝ ଉଠିଗଲା ବୋଲି । ପାଠପଢ଼ା ବେଳର ଝିଅମାନେ କିଏ କୁଆଡ଼େ ରହିଲେଣି, କେତେକ ଏଇଠି ବି ଅଛନ୍ତି—ବଜାର କି ସିନେମା ହଲରେ ଭେଟ ହୁଏ । ମଞ୍ଜୁଶ୍ରୀ ଆଜିକାଲି ଯାହାକୁ ବା ଚିଠି ଲେଖେ, ପ୍ରତିଟି ଚିଠି କେବଳ ସେ ସୁଖୀ ବୋଲି ସେମାନଙ୍କର ଧାରଣା ବଳବତ୍ତର କରିବା ପାଇଁ ।

ପିଲାଦିନେ ବାପାଙ୍କ ମୁହଁ ଝାପ୍‌ସା ମନେ ଅଛି । ମା'ର ଧଳା ଡ୍ରେସ୍, କ୍ଲାନ୍ତ ଝାଉଁଆ ମୁହଁ ଦେଖିଲେ ମଞ୍ଜୁ କଥା କହିବାକୁ ଭରସେ ନାହିଁ । ଘରୁ ବାହାରି ସ୍କୁଲ କି କଲେଜରେ ପହଞ୍ଚିଗଲାକ୍ଷଣି ତାକୁ ଲାଗେ ସତେ କି ଦେହରେ ଡେଣା ଲାଗିଗଲା ।

ମଞ୍ଜୁଶ୍ରୀ ଆଶା କରିଥିବା ସ୍ୱାମୀଠାରୁ ବିଜୟ ଅନେକ ବେଶି, ତା ପାଖେ ଥିଲେ ମଞ୍ଜୁକୁ ଆଉ କିଛିର ଭୟ ନାହିଁ । ସେଇଥିପାଇଁ ବୋଧହୁଏ

ସେ ବେଳେ ବେଳେ ନିଜ ସୀମା ଭୁଲିଯାଏ ଓ ବିଜୟଙ୍କୁ ହିଁ ଉଭିବା କଥା ଭୁଲିଯାଏ ।

ଶନିବାର ଦିନ ଉପରଓଳି ନୂଆ ଶିଖିଥିବା ଖୋଷାରେ ଯୂଇ-ମାଳଟିଏ ପିନ୍ଧି, ବସିବା ଘରୁ ବାରଣ୍ଡା ପାହାଚଯାଏଁ ପ୍ରାୟ ଦଉଡ଼ି ଯାଇ ମଞ୍ଜୁଶ୍ରୀ ଅଫିସରୁ ଓହ୍ଲାଉଥିବା ବିଜୟଙ୍କୁ ସ୍ୱାଗତ କଲା । ବିଜୟ ନିଜ ଡାକୁ ସୁନ୍ଦର ଦାନ୍ତ ସେଟ୍ ଦେଖାଇ କହିଲେ—"ଆମେ ଜିତିଲୁ ।" ମଞ୍ଜୁଶ୍ରୀ ଆଶ୍ୱସ୍ତିର ଦୀର୍ଘଶ୍ୱାସ ଛାଡ଼ିଲା, କହିଲା—"ମୁଁ ତ ଜାଣିଥିଲି ତମେ ଜିତିବ ।"

ଭିତରେ ପପୁ ତା ନୂଆ ଖେଳନାକୁ କୁଣ୍ଢେଇ ଧରି ଶୋଇଯାଇ-ଥାଏ, ମିନିର ନୂଆ ଫ୍ରକଟି ଦୁଧବାନ୍ତିରେ ଓଦା ହୋଇ ପାଲଟା ସରିଥାଏ । ମଞ୍ଜୁଶ୍ରୀ ରୋଷେଇ ଘର ବନ୍ଦ କରି ଆସିଲାବେଳକୁ ବିଜୟ ଟେବୁଲ ଉପରେ ଖୋଲା ସୁଟକେସ ପାଖେ ବସିଥାଏ—ଝର୍କା ବାହାରକୁ ଅନେଇ ଥାଏ । ବାହାରେ ଜହ୍ନ ନ ଥାଏ । ମଞ୍ଜୁଶ୍ରୀ ଭିତରକୁ ଆସିଲାକ୍ଷଣି ବିଜୟ ଦୃଷ୍ଟି ଫେରାଇଲେ, ଉଠି ଆସି ଦୁଇ ହାତରେ ମଞ୍ଜୁଶ୍ରୀକୁ ପାଖକୁ ଟାଣି-ନେଲେ । ମଞ୍ଜୁ ହଠାତ୍ ନୂଆ ଶାଢ଼ୀଟା ପିଠି ଉପର ଦେଇ ଗୁଡ଼େଇ ହୋଇଥିବା ଦେଖି ଆଶ୍ଚର୍ଯ୍ୟ ହେଲା; ପଚାରିଲା

—"ଇଏ କଣ ?"

—"ତମ ପାଇଁ ଶାଢ଼ୀଟିଏ । ପପୁ, ମିନିଙ୍କ ପାଇଁ ଜିନିଷ କାଢ଼ିଲା ବେଳେ ତମେ ଚହିଁଲ ବି ନାହିଁ ତମ ପାଇଁ କଣ ଆଣିଛି ବୋଲି ?"

କୋହ ମିଶା ବସା ଗଳାରେ ମଞ୍ଜୁଶ୍ରୀ କହିଲା—"ପ୍ରତିଥର କଣ କିଛି ଗୋଟାଏ ଆଣିବା ଦରକାର ? ମୁଁ କଣ ପିଲା ହୋଇଛି ?"

ବିଜୟ ତାକୁ ଛାତି ଉପରେ ଜାକି ଧରିଲେ, କହିଲେ—"ମଞ୍ଜୁ, ତମକୁ ମୁଁ ବହୁତ ଭଲପାଏ, ଜୀବନରେ ସବୁଠୁ ବେଶି, ବିଶ୍ୱାସ କରୁନ ମୋତେ ?"

ମଞ୍ଜୁଶ୍ରୀ ଟେବୁଲ ଉପରେ ଅସ୍ତବ୍ୟସ୍ତ ଖେଳେଇ ପଡ଼ିଥିବା ସୁଟକେସକୁ ସଜାଡ଼ିବା କଥା ଭାବୁଥାଏ, ଭାଗ୍ୟ ଭଲ ଝରକା ପର୍ଦ୍ଦା ଟେକା ହୋଇ ନାହିଁ ଏମିତି ବେଳେ—ଭାବୁଥାଏ ଓ କାନ୍ଥ କଡ଼ରେ ବୁଢ଼ିଆଣୀଟିଏ ଲଗି ପଡ଼ି ତା ଜାଲ ମରାମତି କରୁଥିବା ଲକ୍ଷ୍ୟ କରୁଥାଏ ।

ବିଜୟ ଧୀର ଗଳାରେ ତା କାନ ପାଖେ କହି ଯାଉଥିଲା, ଆଉ ଶେଷରେ ପଚାରିଲା –"ମଞ୍ଜୁ, କହିଲନି ତ, ମୋତେ ବିଶ୍ୱାସ କରୁଚ କ ନାହିଁ ?"

ମୁଣ୍ଡ ଟୁଙ୍ଗାଇ ଅତି ଧୀରେ ମଞ୍ଜୁଶ୍ରୀ କହିଲା—"କରେ । ଆଉ କାହାକୁ ବିଶ୍ୱାସ କରିବ ?"

ବୁଢ଼ିଆଣୀଟି ନିଜ ଜାଲ ଭିତରେ ଏଥର ନିଷ୍ଟୁପ ହୋଇ ବସି ପଡ଼ିଥାଏ । ମଞ୍ଜୁର ଖିଆଲ ହେଲା ବୁଢ଼ିଆଣୀ ନିଜ ଜାଲରେ ନିଜେ ଫନ୍ଦ ହୁଏ ନାହିଁ କେବେ କେମିତି ? ତା ଗୋଡ଼ ଦେହ ଆଉ ତା ତିଆରି ସୁନ୍ଦର ଘରର ତନ୍ତୁ ମଝିରେ ପତଳା ପିନ୍ ପିନ୍ କାନ୍ଥଟିଏ ଥାଏ କ ?



# ଶୋକ

ସୀତାନାଥ ବାବୁ ଆଠାଶ ଖଣ୍ଡି ହାତରେ ଧରି ବସରୁ ଓହ୍ଲାଇଲେ, ଆଉ ବସ୍ ଧୂଳି ଉଡ଼ାଇ ଚାଲିଯିବାର କେଇକ୍ଷଣ ପର୍ଯ୍ୟନ୍ତ ଆଗକୁ ଅନାଇ ସେମିତି ଠିଆ ହୋଇ ରହିଲେ । ତାପରେ ଚୁପ୍‌ଚାପ୍ ଆଗକୁ ବଢ଼ିଲେ ପକ୍କା ରାସ୍ତାରୁ ବାହାରି ଗଡ଼ିଯାଇଥିବା ଧୂଳିଆ ସଡ଼କଟିରେ । ମୁଣ୍ଡର ପଚିଲା ବାଳରେ ବାଁହାତ ବୁଲାଇ ଆଣି ସେ ମନଭିତରକୁ ଉଙ୍କି ପଶିଆସୁଥିବା ଚହ୍ଲା ନରମ ଅନୁଭୂତିଟିଏକୁ ଘଉଡ଼ି ଦେଲେ, ଭ୍ରୂ କୁଞ୍ଚାଇ ଓଠ ଚିପି ଭାବନେଲେ···ହଁ, ମୁଁ କୋଡ଼ିଏ ବର୍ଷ ପରେ ଫେରୁଚି ମୋ ଜନ୍ମମାଟିକୁ (ହଃ—ସମସ୍ତେ ତ କୋଉଠି ନା କୋଉଠି ପୁଣି ଜନ୍ମହେବେ—ସହର ବଜାରରେ ଫୁଟ୍‌ପାଥ୍‌ରେ ବି ଲୋକ ଜନ୍ମ ହେଉଛନ୍ତି) । ସେଇ ଦୂର ଗଛ ଗହଳରେ ଦିଶୁଛି ଗାଁଟା ।

ଦିନ ସରି ସରି ଆସିଲାବେଳର ଝରା, ବାଟ ଚାଲିବାକୁ ସେମିତି ବାଧୁନାହିଁ । ଶୁଖିଲା ଧାନବିଲ ଭିତର କାଁ ଭାଁ ଆମ୍ବଗଛମାନଙ୍କରେ ଆମ୍ବକଷି ଲଦିହୋଇଛି । ଧୀର ପବନ ସଙ୍ଗେ ଝାଳ ଫିଟି ଆସୁଛି; ଚାଲିବାର ପୁଣି ବସ ଜର୍ଣ୍ଣି କରିବାର ଅଭ୍ୟାସ ନାହିଁ । କାରରେ ଆସିଥିଲେ ଘଣ୍ଟାକରେ ପହଞ୍ଚି ହୋଇଥାନ୍ତା, ରାସ୍ତା କେମିତିଥିବ ଜାଣି ନ ଥିବାରୁ ସେ ସାହସ କଲେ ନାହିଁ କାର୍ ଆଣିବା । ଘରେ ସ୍ତ୍ରୀକୁ ଆଶ୍ୱାସନା ଦେଇ ଆସିଛନ୍ତି ବସ୍‌ରୁ ଓହ୍ଲାଇଲା ମାତ୍ରେ ରିକ୍ସା ମିଳିଯିବ ଓ ପନ୍ଦ୍ରଦିନ ଉପରୁ ଓଳିକୁ ସେ ଫେରିଆସିବେ ନିଶ୍ଚିତଭାବେ । ସ୍ତ୍ରୀ ନୂଆ ବାହାହୋଇ ଗାଁକୁ ଆସିଥିଲେ ଥରେ ଦି'ଥର । ଆଉ ପୁଅ ଝିଅମାନେ ତାଙ୍କ ହେତୁ ପାଇବା

ଦିନୁ ଗାଁ ଦେଖି ନାହାନ୍ତି, ଆସିବାର ପ୍ରଶ୍ନ ଉଠେନାହିଁ । ସୀତାନାଥ ବାବୁ ଗାଁ ଛାଡ଼ିଥିଲେ ବାପାଙ୍କ ଦଶାହ କାମ ପରେ, ଆଉ ଏ ଭୂଇଁ ମାଡ଼ିବେନି ବୋଲି ଶପଥକରି । କକେଇ, ଯାହାଙ୍କୁ ବାପା ପୁଅପରି ସ୍ନେହ କରୁଥିଲେ, ସିଏ ବାପାଙ୍କ ଦଶାହକାମ ନସରୁଣୁ ସବୁଯାକ ପୈତୃକ ସମ୍ପତ୍ତି ତାଙ୍କ ନିଜର ବୋଲି ଘୋଷଣା କରିପକେଇଲେ—ଖାଲି ଘୋଷଣା ନୁହେଁ, ବାପା ଛ ମାସକାଳ ବିଛଣାରେ ପଡ଼ିରହିଥିବା ସମୟରେ କାଗଜପତ୍ରରେ ବି ସବୁ ବନ୍ଦୋବସ୍ତ କରି ନେଇଥିଲେ । ସେଥିରେ ଗାଁ ଲୋକଙ୍କର କାହାରି କିଛି କହିବାର ନଥିଲା ।

କକେଇଙ୍କର ଧପ୍ପାବାଜି ସୀତାନାଥ ବାବୁଙ୍କ ମନରେ ସବୁ ବିଶ୍ୱାସକୁ ଦୋହଲାଇ ଦେଇଥିଲା, ଆଉ ଗାଁ ଲୋକେ ତାଙ୍କଠୁ ଏତେ ଦୂରରେ ବୋଲି ସେ ସେଇ ପ୍ରଥମ ଜାଣିଲେ । ବାସ୍, କଥାଟାକୁ ଆଉ କୋର୍ଟ କଚେରୀକୁ ନ ନେଇ ସେ ଗାଁ ଛାଡ଼ିଥିଲେ । ନିଜ ରକ୍ତର 'ଲୋକଙ୍କ ମନ ଯେଉଁଠି ଏତେ ଛୋଟ, ଆଉ ଯେଉଁ ଗାଁଆର ଲୋକେ ଅନ୍ୟର ଉଲ୍ଲଂଘନ ପ୍ରତି ଏତେ ନିର୍ଲିପ୍ତ, ସେଇଠି ଜମି କେତେ ଏକର କି ଘରଡ଼ିହ କେଇ ବଖରା ପାଇଁ ଲଢ଼ିବା ତାଙ୍କର ଦରକାର ନାହିଁ । ସହରରେ ଭଲଭାବେ ଥଇଥାନ ହୋଇଗଲା ପରେ କ୍ରମେ କକେଇଙ୍କ ପ୍ରତି ରାଗ ବି ମନରୁ ଲିଭି ଲିଭି ଆସିଲା—ଛାଡ଼, ତାଙ୍କ ବିରାଟ ପରିବାରକୁ ଚାହିଁ ତାଙ୍କର ବା ଅଛି କଣ ? ସେଇ ଜମି କିଛି ଆଉ ଟାଉଟରୀ . ମୁଣ୍ଡି ଖଣ୍ଡିକ । ତେବେ ରାଗ ସିନା ଗଲା, ବିମୁଖ ହୋଇ ଯାଇଥିବା ମନଟାରେ ତ ଆଉ ସ୍ନେହ ଫୁଟିବା ସମ୍ଭବ ନୁହେଁ, ସେ ଆଉ ଗାଁ ମାଟି ମାଡ଼ି ନଥିଲେ ।

ଆଜି ପୁଣି ଫେରୁଛନ୍ତି । ଫେରୁନାହାନ୍ତି ଠିକ୍, ସେ ଆସିଛନ୍ତି କକେଇଙ୍କର ଦଶାହ କାମରେ ଯୋଗ ଦେବାକୁ ଦିନକ ପାଇଁ । ଗତ କାଲି ସେ ବିପିନ ଠାରୁ ଚିଠିରେ କକେଇଙ୍କର ମରିବାର ଖବର ପାଇଲେ । ଆଗରୁ ଅବଶ୍ୟ ଅସୁସ୍ଥ ଥିଲେ ବୋଲି ଶୁଣିଥିଲେ ।

ଗାଁ ପାଖେଇ ଆସିଲା ଓ ସେ ଅନୁଭବ କଲେ ଯେ ଏତେଦିନ ପରେ ବି ଗାଁର ଛୋଟ ଛୋଟ କଥାମାନ ତାଙ୍କର ବହୁ ଆତ୍ମୀୟ ବୋଲି

ମାନବାକୁ ହେବ—ଏଇ ଯେମିତି କୂଅ ଗୃହାଗ୍ନି ଉପରେ ସ୍ତୀଟିର ମୁଣ୍ଡରେ ମାଠିଆ ଥୋଇ ଆର ପାଣି ମଠିଆକୁ ସନ୍ତର୍ପଣରେ କାଖକୁ ଟେକି ନେଉ-ଥିବାର ଦୃଶ୍ୟ, ବା’ ଦୂରରୁ କିଏ ଜଣେ କାହାକୁ ଡାକୁଥିବାର ଲମ୍ବିଲ ସ୍ୱର । ଗାଁର ଚେହେରାରେ ଅଳ୍ପ ବହୁତ ପରିବର୍ତ୍ତନ ଘଟିଥିଲେବି ସେମିତି ଚିହ୍ନି ନହେଲା ଭଳି ନୁହେଁ । ଗାଁ ଦାଣ୍ଡରେ ଚାଲିଲା ବେଳେ ସେ ମୁହଁ ଟେକି ଯିବାଆସିବା ଲୋକଙ୍କୁ ନିରେଖି ଚିହ୍ନିବାକୁ ଚେଷ୍ଟା କରିବାର ଆଗ୍ରହ ଅନୁଭବ କଲେନାହିଁ । ସେମିତି ଆଟେଚିକୁ ଧରି ଗମ୍ଭୀର ପାଦରେ ମୁହଁପୋତି ଚାଲିଲେ, ତାଙ୍କୁ ଚମକାଇ ଦେଇ ଘର ମୁହଁ ହଠାତ୍ ପହଞ୍ଚି-ଗଲାପାଏଁ । ଘର ମୁହଁରେ ସେ ଠିଆହୋଇ ରହିଗଲେ, ଅତି ଆପଣାର ତ’ ଏବେ ନୁହେଁ ଯେ ଗୋଡ଼ ସ୍ୱୟଂ ଟାଣିନେଇଯିବ ଭିତରକୁ । ଘରର ରୂପରେଖ ବି’ ସେଇ ପୁରୁଣାଦିନ ପରି ରହିଛି ପ୍ରାୟ, ତେବେ କୋଡ଼ିଏ ବର୍ଷ ପୂର୍ବେ ଏଇ ପରିଚ୍ଛନ୍ନ ମାଟି ଘରଟି ଧନଧାନ୍ୟରେ ପୁରି ଉଠୁନଥିଲେ ବି’ ଯେଉଁ ପ୍ରଶାନ୍ତିର ସନ୍ତୋଷର ମୁହଁ ନେଇ ଠିଆହୋଇଥିଲା, ଏବେ ତା’ ନାହିଁ । ସେ ମୁହଁରେ ଯେମିତି ଜରା ରୋଗ ଘୋଟି ଆସିଛି, ଆତ୍ମବିଶ୍ୱାସର ଲେଶ ଦିଶୁନାହିଁ ।

ଘର ଭିତରୁ ବିପିନ ବାହାରି ଆସିଲା, କକେଇଙ୍କ ବଡ଼ପୁଅ । ମାଇନର ସ୍କୁଲରେ ମାଷ୍ଟର ଚାକିରି କରିଚି, କାମରେ ଯେତେଥର ଭୁବନେଶ୍ୱର ଯାଇଛି, ନିଃସଙ୍କୋଚରେ ଦିନେ କି ଓଳିଏ ଲାଗି ସୀତାନାଥ ବାବୁଙ୍କ ଘରେ ଓହ୍ଲାଇଚି । ସେତେବେଳକୁ ସଫାସୁତୁରା ଦିଶେ, ଏବେ ଏ ମଇଳା ଧୋତି ପିନ୍ଧି ଚିହ୍ନି ହେଉନାହିଁ ହଠାତ୍ ।

ବିପିନ ସୀତାନାଥ ବାବୁଙ୍କୁ ଦେଖି ଦଣ୍ଡେ ରହିଗଲା ଠିଆହୋଇ, ଆଖିକୁ ବୋଧେ ବିଶ୍ୱାସ କରିପାରିଲା ନାହିଁ । ମୁହଁରେ ଗଦ୍‌ଗଦ୍ ହସଟିଏ ଫିଟି ନ ପଡ଼ୁଣୁ ସେ ଆତ୍ମସମ୍ବରଣ କଲା ଓ ଗୋଡ଼ ଛୁଇଁ ପ୍ରଣାମ କରି ହଠାତ୍ କର୍ତ୍ତବ୍ୟ ସଚେତନ ହେଲାପରି କାନ୍ଧରେ ଗାମୁଛା ମୁହଁରେ ଜାକି ଧକେଇ କାନ୍ଦିଲା ପିଲାଟେଶ କରେ । ସୀତାନାଥ ବାବୁ ଆଟାଚି ଥୋଇ ତା’ ପାଖକୁ ଗଲେ ଓ ତା ପିଠିରେ ସାନ୍ତ୍ୱନାର ହାତ ଥୋଇଲେ । ଗୁହୁଁ ଗୁହୁଁ ଘରଯାକର ଲୋକ କୁଟୁଡ଼ଇ ହୋଇ ପଡ଼ିଲେ, ଚୁପା ହଇଚଇ ଜଣାପଡ଼-

ଗଲା ଓ ତାପରେ ଖୋଲା କାନ୍ଦ ତଥା ବାହୁନାର ସୁଅ ଛୁଟିଲା । ସୀତାନାଥ ବାବୁ ତଳକୁ ମୁହଁପୋତି ରହିଲେ କେବଳ, ତାଙ୍କୁ ବାକ୍‌ରୁଦ୍ଧ ଲାଗୁଥିଲା ଏତେଗୁଡ଼ାଏ କାନ୍ଦରେ । ସମସ୍ତଙ୍କ ଭିତରେ କକେଇଙ୍କର କୋଡ଼ିଏ ବର୍ଷ ତଳର ହାଡ଼ୁଆ ଅଣ୍ଟାଭିଡ଼ା ଚେହେରାଟିର ଅନୁପସ୍ଥିତି ସେ ଅନୁଭବ କଲେ । ଏ ଭିତରେ ବିନୋଦ ଓ ବୃନ୍ଦାବନ ତାଙ୍କୁ କୁଣ୍ଢେଇଧରି କାନ୍ଦିଥିଲେ ପ୍ରାୟ ଓ ସୀତାନାଥ ବାବୁଙ୍କର କୋଡ଼ିଏ ବର୍ଷ ତଳେ ଏଇଘରେ ଅଭ୍ୟସ୍ତ ହୋଇଥିବା ଠିକ୍ ସେ ଏଇପରି ଦୃଶ୍ୟମାନ ଜଳଜଳ ଅନୁଭବ ହେଲା । ତେବେ ତାଙ୍କ ଦେହ ମୁହଁ ସାରା ଓଜନିଆ ଲାଗି ଦାନ୍ତ ଜାବି ପଡ଼ିଯିବା ପରି ଲାଗିଲା ସିନା, ତଣ୍ଟିରେ କୋହର ଗୁଳା ବା ଆଖିରୁ ପାଣି ଝରିଯିବା ସେ ଅନୁଭବ କଲେ ନାହିଁ ।

ଶୋକ ପର୍ଯ୍ୟାୟ ପରେ ସମସ୍ତେ ତାଙ୍କୁ ପାଛୋଟି ନେବାବେଳେ ସେ ଭୂଇଁକୁ ଅନେଇ ରହିଥିଲେ ବି ତାଙ୍କର ମନେହେଲା ସମସ୍ତେ ଯେମିତି କଟମଟ କରି ତାଙ୍କ ଶୁଖିଲା ଆଖିକି ଅନେଇଛନ୍ତି ।

ହାତମୁହଁ ଧୋଇ ସାରି ବସି ନିଶ୍ୱାସ ମାରିଲା ବେଳେ ସେ ଭାବିଲେ ତାଙ୍କର ଯେଉଁ ଭିନ୍ନ ସାମାଜିକ ଗୋଷ୍ଠୀ, ପଦବୀ, ଜୀବନ—ଏମାନେ ବୁଝିବେ ନାହିଁ । ସେଥିରେ ବର୍ଷ ବର୍ଷ ଧରି କେମିତି ଲୋକଙ୍କ ଆଗରେ ମନର ଭାବସବୁ ଚପାଇ ରଖିବାକୁ, ଗୋଟିଏ ଯଥାସମ୍ଭବ ସ୍ୱାଭାବିକ ଭାବ ମୁହଁରେ ଫୁଟାଇବାକୁ ହୁଏ, ଏପରିକି ନିଜ ପରିବାର ଆଗରେ ବି ମନର ଚିନ୍ତା, ଶୋଚନା ସବୁ ଲୁଚାଇ ରଖିବାକୁ ହୁଏ ଅନେକ ସମୟରେ । ତେଣୁ ଏତେ ସହଜରେ ଇଚ୍ଛା କଲାମାତ୍ରେ ସମସ୍ତଙ୍କ ଆଗରେ ଏମିତି ଆଦିମ ଭାବେ ଭାବ ପ୍ରକାଶ କରିବା ତାଙ୍କ ପକ୍ଷେ ସମ୍ଭବ ନୁହେଁ । ତାଛଡ଼ା ନିଜପାଖେ ସତ କହିବାକୁ ଗଲେ—କକେଇଙ୍କ ସଙ୍ଗେ ତାଙ୍କର ତ ସେମିତି ସ୍ନେହର ସମ୍ପର୍କ ନଥିଲା, ତେଣୁ କେବଳ ବିଧିରକ୍ଷା କରିବାକୁ କାନ୍ଦିପାରୁ ନାହାନ୍ତି ବୋଲି ଲଜ୍ଜିତ ହେବାର କିଛି ନାହିଁ ।

ରାତିରେ ଗରମ ଯୋଗୁଁ ଅଣଓସାରିଆ ଭିତର ପିଣ୍ଡାଟିରେ ତାଙ୍କର ଖଟ ପଡ଼ିଥିଲା । ଏତେ ବ୍ୟସ୍ତତାରେ ଦିନ କଟିଥିବାର କ୍ଲାନ୍ତି

ସତ୍ତ୍ୱେ ବଛଣାରେ ପଡ଼ିବା ପରେ ତାଙ୍କ ଆଖିକୁ ନିଦ ଆସୁନଥିଲା । ସଞ୍ଜ ପହର ସାରା ବନ୍ଧୁ ବାନ୍ଧବ ଚିହ୍ନା ପରିଚୟଙ୍କ ଭେଟାଭେଟିରେ କଟିଥିଲା । ଖୁଡ଼ୀଙ୍କ କଥା ଭାବି ତାଙ୍କ ମନରେ ଆଗରୁ ସମବେଦନା ଜାତ ହୋଇ-ଥିଲେ ବି ତାଙ୍କ ବୈଧବ୍ୟ ବେଶ ଆଖିକୁ ଏତେ କଠୋର ଲାଗିବ ବୋଲି ସେ ଅନୁମାନ କରିନଥିଲେ—ପୂର୍ବର ସୁଦର୍ଶ ରଣଚଣ୍ଡୀ ଖୁଡ଼ୀ ଯେମିତି ଠିକ୍ ବିପରୀତ ବେଲ୍‌ର ବୁଢ଼ୀଟିଏର ଅଭିନୟ କରିବାକୁ ଷ୍ଟେଜ୍‌କୁ ବାହାରିଛନ୍ତି । ଖୁଡ଼ୀ ଅବଶ୍ୟ ତାଙ୍କ କରୁଣ ବାହୁନା ଭିତରେ ବି ସୀତାନାଥ ବାବୁଙ୍କୁ ଭୁଲିନଥିଲେ, ନିଜର ଅସହାୟତା ଓ ପତିଙ୍କର ସଦ୍‌ଗୁଣ ଗାଉ ଗାଉ କହୁଥିଲେ—କେଜାଣି ତମର ବର୍ଷେକ ଜ ବଛଣାରେ ପଡ଼ିଲେ ଯେ କେତେ ଖୋଜିଲେ ତମକୁ···ଖାଲି କହୁଥାନ୍ତି, ସୀତାନାଥ କଣ ସହରେ ମୋତେ ଥରେ ଦେଖିବାକୁ ସୁଦ୍ଧା ଆସିଲାନାହିଁ ? ଆଉ କଣ ଦେଖିବାକୁ ଆସିଲ ?—ତାପରେ ଖୁଡ଼ୀ ସରୁ ନାକଟିଏରେ ନୂଆ ବର୍ଷାପାଣି ଅସରାଏ ମାଡ଼ିଆସିଲା ପରି କାନ୍ଦିଲେ । ଆଉ ଖୁଡ଼ୀଙ୍କ ପରେ ସବୁଠାରୁ ବେଶୀ ଭାଙ୍ଗି ପଡ଼ିଛି ମିନ—ତା ସ୍ୱାମୀ ପାଗଳ ହୋଇ ଘର ଛାଡ଼ିଲା ପରଠୁ ସିଏ ଆସି ବାପଘରେ ରହିଲା, କୋଳରେ ପିଲାଟିକି ନେଇ । ଲେଖାଯୋଖା ମାଉସୀ ନନବୋଉ ବି ଆସିଥିଲା, କହିଲା—ତୋ ବାପ ଚାଲିଗଲା ଜାଣ, ତୋ ବାପ ଗଲାପରେ କେଜାଣି ଥିଲା ବାପଘର······

ଆହୁରି ଅନେକ ବନ୍ଧୁ ବାନ୍ଧବଙ୍କ ସଙ୍ଗେ ଦେଖା ହୋଇଥିଲା । କେତେ ପୁରୁଣା ମୁହଁ ଲୁଚି ଗଲେଣି ଏଭିତରେ, ଅନେକ ସୁନ୍ଦର ଚିକ୍‌କଣ ମୁହଁ ବି ବୟସରେ ଲେଉଟୁକୋଚୁ ହୋଇଗଲେଣି । ଆଉ କେତେଗୁଡ଼ିଏ ଅଳ୍ପବୟସ୍କ ନୂଆ ମୁହଁ ଉଦ୍‌ଗ୍ରୀବ ଆତ୍ମୀୟତା ଓ ସମ୍ମାନରେ କଥା କହୁଥିଲେ—ଯେମିତି ସୀତାନାଥ ବାବୁ ତାଙ୍କ ପାଖେ ଆଦୌ ଅପରିଚିତ ନୁହଁନ୍ତି ।

ଅନ୍ଧାର ହୋଇ ଆସିଲା ପରେ ଘରେ ଗହଳି କମିଯାଇଥିଲା ଓ ବିନୋଦ ଆସି ଛୁଇ ଅନ୍ଧାରରେ ଗୋଡ଼ ପାଖେ ବସି ଗପସପ କଲା— ଯେମିତି ଅନେକଦିନ ପରେ ନିଜ ଲୋକଙ୍କ ସଙ୍ଗେ ଦେଖାହୋଇଛି ।

କଥା ମନିରେ କହୁଥିଲା—ଗୃକଷ ଖଣ୍ଡିଏ ଲାଗି ବଡ଼ ଧାଁ ଦଉଡ଼ କଲଣି ଭାଇନା, ଆମ କୁଟୁମ୍ବ ତ ଦେଖୁଛ, ଗୃହରେ କଣ ଚଳା ହବ ? ଆଉ ଜାଣିଥିବ ତ ବାପା ମିଛରେ ଯଦୁପଣ୍ଡା ସାଙ୍ଗରେ କେଶ ଲଢ଼ି ଗୁଡ଼ାଏ ଜମି ବାଡ଼ି ନଷ୍ଟ କରିଦେଇଗଲେ । ନିଜେ ଏତେ ଛଳକପଟ ଜାଣୁ ନଥିଲେ, ଏଣେ ନିଜର ଦମ୍ଭ ବି...

ସୀତାନାଥ ବାବୁଙ୍କର ମନେହେଲା କଳେଇଙ୍କ ମୃତ୍ୟୁରେ ଯେମିତି ବିଦ୍ୱେଷର ପାଚେରିଟିଏ ମିଳେଇ ଯାଉଛି ଶୂନ୍ୟରେ । ଅକାରଣ ଅଜବ ଗୋଟାଏ ଦୟା ଆସୁଚି ଯେ ଆହା ବିଚରା ନାହିଁ ଆଉ । ମରିଯାଇଥିବା ଲୋକର ତ କାହାର ହାନିଲାଭରେ ଆଉ ହାତ ନାହିଁ, ତାର ତେଣୁ ସମ୍ପୂର୍ଣ୍ଣ ବଦ୍‌ଗୁଣରହିତ ଦେବତୁଲ୍ୟ ପାଲଟି ଯିବାରେ କ୍ଷତି କଣ ? ତାର ତ ବ୍ୟକ୍ତିତ୍ୱ ବି ଜାଣ ମିଳାଇ ଯାଉଛି ଧୀରେ ଧୀରେ—କ୍ରମେ କେବଳ କେତେଜଣଙ୍କ ମନର ସ୍ମୃତିରେ ହିଁ ରହିବ, ତା ବି ଭିନ୍ନ ଭିନ୍ନ ଲୋକଙ୍କ ଯୋଗୁଁ ବିଭିନ୍ନ ରୂପ ନେବ ।

ସୀତାନାଥ ବାବୁ ଚିତ୍‌ହୋଇ ଶୋଇ ଆକାଶକୁ ଚାହିଁଲେ—ଗାଁ ରାତିର ସିଲ୍‌ହଟ୍‌ରେ ବି ପରିବର୍ତ୍ତନ କିଛି ପ୍ରାପ୍ତ ହୋଇନାହିଁ । ଯେତେ ବର୍ତ୍ତମାନରେ ମନ ଲଗାଇଲେ ବି ସ୍ମୃତି ଭିତରଟା ଚୁଉଁ ଚୁଉଁ ଯୋଡ଼ ଉଠୁଚି ଓ ସମୁଦାୟ ନିଜେ ସେ ଯେମିତି ଶୈରବାଳରେ ଗୋଡ଼ ଥୋଇଲା ପରି ଟାଣିହୋଇ ଯାଉଚନ୍ତି ଗଲାଦିନର ଭାସି ଭାସି ନଶାଳିଆ ସ୍ମୃତି ଭିତରକୁ ।

ହେଇ ପାତାଳ ଅନ୍ଧାରରେ ସେ ନିଜକୁ ସାମ୍ନା କଲେ— ଗାଁକୁ ଆସିବାକୁ ସ୍ଥିର କଲାବେଳଠୁଁ ସେ ଯେମିତି ଅଦୃଶ୍ୟ ସଞ୍ଜୁଟିଏ ରଖିଛନ୍ତି ନିଜ ଆଗରେ—କେହି ମୋତେ ଛୁଇଁ ପାରିବ ନାହିଁ ତମ ଭାବପ୍ରବଣତାର ଅସ୍ତ୍ରମୁନରେ କହିଦେଉଚି ।

ଗତକାଲି ଦ୍ୱିପହରେ ସେ କଳେଇ ମରିଯିବାର ଖବର ପାଇଲେ ଓ ବେଶ୍ କିଛି ସମୟ ଧରି ଉଦାସ ହୋଇ ପଡ଼ିଥିଲେ । ସନ୍ଧ୍ୟାବେଳେ ପ୍ରତିମାଙ୍କୁ କହିଲେ—ଭାବୁଛି ଦିନକ ପାଇଁ ଗାଁକୁ ଯାଇ ବୁଲିଆସିବି, କଣ କହୁଛ ?

ପ୍ରତିମା ଖାଲି ମୁହଁରେ କହିଲେ—ଯାହା ଠିକ୍ ଭାବିବ । ସେଇ ଘରକୁ ପୁଣି ଯିବ ?

ସୀତାନାଥ ବାବୁ ଭାବିଚାଲି କୈଫିୟତ ଦେଲାପରି କହିଲେ—ନଗଲେ ଅସୁନ୍ଦର ହେବ । ଆଉ ସେ ଘରେ ତ ଏବେ ବି ମୋର ଅଧିକାର ଅଛି ପ୍ରତିମା, କାଲି ତକରାର ଲାଗି ଘର ଛାଡ଼ିଦେଲି ଯିନା, ଏବେ ଆଉ ରାଗ କାହା ଉପରେ ?

ଘରେ ପୁଅଝିଅ କାହାରି ସଙ୍ଗେ ଆଉ ଆଲୋଚନା ହୋଇନାହିଁ ଏ ବିଷୟରେ । ତେବେ ବାବୁଲି କହୁଥିଲା ତା ମା'କୁ—ବାପା ସତରେ ଯିବେ ତାଙ୍କ ଗାଁକୁ । ପ୍ରତିମାଙ୍କ ଗୁଣୁଗୁଣୁ ଉତ୍ତର ତାକୁ ଶୁଣାଯାଇ ନଥିଲା ଓ ପୁଣି ବାବୁଲିର ସ୍ୱର ଶୁଭିଲା—ଏ ଅଯଥା ସେଣ୍ଟିମେଣ୍ଟାଲିଟି, ଲୋକଙ୍କ କଥାକୁ ଡର—ଏସବୁ ମୁଁ ବୁଝିପାରେ ନାହିଁ । ସେଇ ଘରେ, କି ସେଇ ଗାଁରେ ବାପାଙ୍କୁ କିଛି ପୋଜିସନ୍ କିଏ ଦେଇଥିଲା ? ମୁଁ ଏସବୁକୁ ହିପୋକ୍ରେସି କହେ—ଏଇ ଫର୍ମାଲ୍ ଶୋକ ।

ଏଇଠି ପହଞ୍ଚି ସେ ବାବୁଲି ପ୍ରଶ୍ନର ଉତ୍ତର ଦେଲେ ନିଜକୁ—କେଉଁ କଥାର ଶତକଡ଼ା କେତେ ଖାଣ୍ଟି ସଚ୍ଚୋଟତା, କେତେ ହିପୋକ୍ରେସି କିଏ କହିବରେ ବାବୁଲି ? ପ୍ରତିଟି କାମରୁ ଲୋକ ଦେଖାଣିଆ ଆଡ଼ମ୍ବର କେତେ ଆଉ ଆତ୍ମାର ଡାକ କେତେ, ତାର ଠିକ୍ ଠିକ୍ ହିସାବ ନିକାଶ କେମିତି ହେବ ? ଶୋକକୁ ତୁ ବା କେବେ ଭେଟିଲୁ ଯେ ବୁଝିଲୁ ତାହା ସାମାଜିକ କର୍ତ୍ତବ୍ୟ କେବଳ ବୋଲି !

ନିଜ ବାପାଙ୍କ ମୃତ୍ୟୁ ବେଳକୁ ସଫଳତା ଓ ପ୍ରତିଷ୍ଠାର ରାସ୍ତାରେ ତାଙ୍କର ନିଶ୍ଚିତ ପାଦ ପଡ଼ି ସାରିଥାଏ । ବୋଉ ଯାଇସାରିଥିଲା ସେ କଲେଜରେ ପଢ଼ିଲା ଦିନୁ । ବାପାଙ୍କ ସ୍ନେହ ତାଙ୍କ ବ୍ୟକ୍ତିଗତ ସମ୍ପର୍କରେ ସବୁବେଳେ ପ୍ରକାଶ ପାଏ ଦୃଢ଼ ଶାସନ ରୂପରେ, ଆଉ ତାଙ୍କ ଉଚ୍ଚାକାଂକ୍ଷାରେ । ବାପା ବିଛଣା ଧରିଲା ବେଳକୁ ତାଙ୍କ ଶାସନ ଓ ଉଚ୍ଚାକାଂକ୍ଷାର ପ୍ରୟୋଜନ ସରିଯାଇଥିଲା ସୀତାନାଥ ବାବୁଙ୍କ ପାଇଁ । ବାପାଙ୍କ ମୃତ୍ୟୁ ପରେ ତାଙ୍କର ସମ୍ପୂର୍ଣ୍ଣ ସ୍ୱାଧୀନ, ଅବିଚଳିତ ନିଷ୍ପତ୍ତି ଥିଲା ଗାଁ ଛାଡ଼ିବାର ।

କଟକେଇଙ୍କ ମୃତ୍ୟୁ ସୀତାନାଥ ବାବୁଙ୍କ ଜୀବନର ଗୋଟିଏ ଘଟଣା ବୋଲି ଧରାଯିବ କି ନାହିଁ ସେ ବାସ୍ତବରେ କହିପାରିବେ ନାହିଁ । ଆସିଲା ବେଳକୁ ସେ ଧରିନେଇଥିଲେ ତାଙ୍କର ଆସିବା ହିଁ ଉଚିତ୍ । ତା' ସାଙ୍ଗକୁ ହୁଏତ ଅନେକଦିନରୁ ପୁରୁଣା ଗାଁଟା ଥରେ ଦେଖି ଯିବାର ଯେଉଁ ଇଚ୍ଛା ମନରେ ଶୋଇ ରହିଥିଲା, ସୁଯୋଗଟିଏ ପାଇ ଫୁଟିବାକୁ ଇଚ୍ଛା ହେଲା ନାହିଁ । ଆହୁରି ବି' ବୋଧହୁଏ ଅନେକଦିନ ତଳେ ନିଜକୁ ସେ ଯେଉଁ-ପରି ଗଣିବାକୁ ଓ ଦେଖାଇବାକୁ ଚାହିଁଥିଲେ, ପୁଣି ସେଇ ପରିବେଷ୍ଟନୀରେ ନିଜକୁ ବାଞ୍ଛିତ ରୂପରେ ଗାଢ଼କରି ଅନୁଭବ କରିବାକୁ । ଅବଶ୍ୟ ଏଠିକି ଆସି ସେ ଦେଖୁଛନ୍ତି ସମସ୍ତେ ତାଙ୍କ ଗୌରବକୁ ନିର୍ବିବାଦରେ ମାନି ନେଇଛନ୍ତି ଓ ଚ୍ୟାଲେଞ୍ଜ ବା ପ୍ରତିଶୋଧ ନାମକ ଶବ୍ଦମାନ ଏଠି ଅସଙ୍ଗତ ।

ଆକାଶରେ ଲୁଗାକାନି ଉଡ଼ୁଥିବା ପରି ଫଟକା ମେଘ ଖଣ୍ଡିଏ ଟିକିଏ ପରେ ବୁଢ଼ା ଲୋକଟିଏର ହାଡ଼ୁଆ ମୁହଁ ପରି ଦିଶିଲା ଓ ନିଦ ଲାଗି ଆସିଲା ବେଳକୁ ସୀତାନାଥ ବାବୁଙ୍କ ମନକୁ ଆସୁଥିଲା ମଣିଷ ସମ୍ପର୍କର ବି' କିଛି ଠିକଣା ନାହିଁ, କେତେବେଳେ କେଉଁ ଆକାର ଧରିବ ।

ସକାଳୁ ଉଠିଲାପରେ ଜଣେ କିଏ ତାଙ୍କ ପାଖକୁ ପାଣି ଢାଳେ, ଦାନ୍ତକାଠିଟିଏ ଆଣିଦେଲା ଓ ଦାନ୍ତକାଠି ଚୋବାଇବା ଅଭ୍ୟାସ ଚାଲି-ଯାଇଥିଲେ ବି' ତାଙ୍କୁ ଲାଗିଲା ରାତିଏ ରହଣି ପରେ ସେ ସେ ପ୍ରାୟ ବିନା ଚେଷ୍ଟାରେ ଗାଁ ଜୀବନ ସହିତ ଖାପି ହୋଇ ଯାଉଛନ୍ତି । ଜଳଖିଆ ପରେ ଖବର କାଗଜ ପଢ଼ିବାରେ ସବୁଦିନ ପରି ଆଗ୍ରହ ତାଙ୍କର ନଥିଲା । ମଝି ମଝିରେ ଛପା ଅକ୍ଷର ଉପରେ ଆଖି ବୁଲାଉ ବୁଲାଉ ସେ କେବଳ ଲକ୍ଷ୍ୟ କରୁଥିଲେ ଚାରିଆଡ଼େ ଅର୍ଥହୀନ ଯୁକ୍ତିହୀନ ବ୍ୟସ୍ତତା ଓ ରହି ରହି ସ୍ୱଚ୍ଛନ୍ଦ ଶୋକ-ବିଳାସ ।

ସାନ ଚାରିକୋଣିଆ ଅଗଣାଟିରେ ଗ୍ରୀଷ୍ମର ଉତ୍ତପ୍ତ ଖରା ଝଲସିଲା ପରି ଆକାଶରୁ ଆସି ପଡ଼ୁଛି ଝଲକାଏ ଶୋକ ଏ ଘରେ—ଯାହା ଉପରେ ଲିଖିନାହିଁ ସିଏ, ଏକ ସ୍ୱତନ୍ତ୍ର ସତ୍ତା ନେଇ ସେ ଯେମିତି ଝୁଲୁଛି ଶୂନ୍ୟରେ,

ଯିଏ ତା' ବାଟ ଦେଇ ଗଲା ଯାଉଛି ବୁଡ଼ିଯାଇ ଝଲସି ଯାଉଛି କ୍ଷଣେ । ସମସ୍ତେ ଆତଯାତ ହେଉଛନ୍ତି ଘର ଭିତର ବାହାର ଓ କକେଇଙ୍କୁ ନମିତ୍ତ କରି ଯେ ଯାହାର ବ୍ୟକ୍ତିଗତ ଶୋକ କରୁଛନ୍ତି, ସହଜ ଖୋଳପାକୁ ଫିଙ୍ଗି ଦେଇ ଆତ୍ମଦୟାରେ ବିହ୍ୱଳ ହୋଇ ବୁଡ଼ି ଯାଉଛନ୍ତି । ଆଉ କାହାର ବା ଧୂଆଁ ବାଜି ଆଖି ପୋଡ଼ିଲାପରି ଗଡ଼ି ଯାଉଛି ଲୁହ କଣ୍ଡ । ଏସବୁ ତାଙ୍କର ଅପରିଚିତ ନୁହେଁ—ସେଇଥିପାଇଁ ଆଜ ଦୂରରେ ବସି ଖବରକାଗଜ ପଢ଼ୁଥିଲେ ବ ସହଜରେ ବୁଝୁଛନ୍ତି ସବୁ ।

ଆଜ ଦିନ ଗୃରଟା ବସ୍‌ରେ ସେ ଫେରଯିବେ । ଯିବାବେଳ ପାଖେଇ ଆସିଲାବେଳକୁ ଅନେକଦିନୁ ଉପୁଡ଼ି ଯାଇଥିବା ଚେରମାନ ଯେମିତି ତାଙ୍କର ମାଟି ଛୁଇଁ ଛୁଇଁ ଆସୁଛି, ଗୋଡ଼ପାଖେ ଲଟେଇ ହୋଇଯାଉଛନ୍ତି ପରିଚିତ ଘାସଲଟା ।

ବନବୋଉ ମାଉସୀ କୁଆଡ଼ୁ ଆସି ତାଙ୍କ ଅଳ୍ପଦୂର ଗ୍ରଡ଼ି ବସି ପଡ଼ିଲା; କହିଲା—ଏକୁଟିଆ ବସି କାଗଜ ପଢ଼ୁଛ, ତୋତେ ଏଠି ଅଡ଼ୁଆ ଲାଗୁଥିବ ନୁହେ ? ଆଉ ଦୁଇ ଗୃରପଦ କଥାବାର୍ତ୍ତା ପରେ ଟିକେ ପାଖକୁ ଘୁଞ୍ଚିଆସି ଅତି ଧୀର ସାଇଁ ସାଇଁ ଗଳାରେ କହିଲା— ଯା' ହେଉ ଆସିଲୁ ସେତିକ ବଡ଼ କଥା, ସେଥିରେ ତୋ କକେଇ ଶାନ୍ତି ପାଇବ । ବର୍ଷେକାଳ ଚିଛଣାରେ ପଡ଼ି କମ୍ କଲବଲ ହେଲକ ସିଏ ? ପୁଅ ବୋହୂ କଏ ପଗ୍ଗରୁଥିଲେ ?

ତା' ପରେ ଆହୁରି ଫୁସ୍‌ଫୁସ୍ କରି କହିଲା—ତୋତେ ତୋ ପୈତୃକ ସମ୍ପତ୍ତିରୁ ବି' କଣିଚାଏ ଦେଲନାହିଁ, ସେଥିରେ ଯୋଉ ପାପ ଅର୍ଜିଲା......

ସୀତାନାଥ ବାବୁ ବୁଢ଼ୀ ମୁହଁକୁ ଅନେଇଲେ, ଆଉ ନତାନ୍ତ ବ୍ୟକ୍ତିଗତ କଥାଟିରେ ମତାମତ ଜାଣିଲା ପରି ପଗ୍ଗରିଲେ—ମୋ ପ୍ରତି କକେଇ ସତରେ ଅନ୍ୟାୟ କଲେ, ନୁହେଁ ମାଉସୀ ? ହେଲେ ଗୋଟାଏ କଥା ଏବେ ମୋ ମନକୁ ଆସୁଛି, କ'ଣ ଜାଣୁ ? ମୁଁ ଭାବୁଛି ତାଙ୍କ ପିଲାଛୁଆଙ୍କୁ ପାଳିବାଲାଗି ବୋଧେ କକେଇଙ୍କୁ ଅନ୍ୟ ଉପାୟ ଦିଶିନଥିବ ।

ସେ ଦେଖୁଥିବେ ମୁଁ ଭଲରେ ଚଳୁଛି । ତେଣୁ ସିଏ ଯାହାକଲେ, ସେ କ'ଣ ସତରେ ପାପରେ ଯିବ ?

ବୁଢ଼ୀ ମିଞ୍ଜି ମିଞ୍ଜି କରି ଅନାଇଲା; ସଙ୍ଗେସଙ୍ଗେ ମୁଣ୍ଡ ଟୁଙ୍ଗାରିଲା—ହଁ, ସତ ବାପ, ଯାହା କହିଲୁ ସତ ।

ସୀତାନାଥ ବାବୁ ପୁଣି ନିଜକୁ ବୁଝାଇଲା ପରି କହିଲେ—ଏଇ ଗାଁରେ ସମ୍ପତ୍ତି ଟିକିଏ କଣ ହୋଇଥାନ୍ତା ମୋର ? ଦେଖାଶୁଣା କରିପାରିଥାନ୍ତ ? ବୁଢ଼ୀ କହିଲା—ନୁହେଁ ଆଉ କ'ଣ ? ତୋର ଏବେ ଠାକୁରେ କୋଉ କଥାର ଅଭାବ କରିଦେଲେ ?

ଖିଆପିଆ ସାରି ସେ ଟିକିଏ ଗଡ଼ ପଡ଼ ହେଲେ, ବାରିପାଖ ଆମ୍ବଗଛ ଆଡ଼ୁ ରହିରହି ଥଣ୍ଡା ପବନ ଆସୁଛି, ଆଖି ଲାଗିଆସୁଛି । ସେ ଘଣ୍ଟା ଦେଖିଲେ, ଆଜି ନଗଲେ କିନ୍ତୁ ପ୍ରତିମା ବ୍ୟସ୍ତ ହେବ, ଯେମିତି ସେ ବ୍ୟସ୍ତ ହୁଅନ୍ତି ଦିନେ ଦିନେ ଯେତେବେଳେ ରାତି ବାରଟା ବାଜିଲା ପରେ ବି ସୀତାନାଥ ବାବୁ ବହି ଖଣ୍ଡିଏ କି ପେପରର ଗୋଟିଏ ପୃଷ୍ଠାକୁ ଘଣ୍ଟାଏ କାଳ ଅନେଇ ବସିଥାନ୍ତି । ନିଶ୍ଚୟ କିଛି ହେଉଛି, ମୋଠୁ ଲୁଚଉଛ । ପ୍ରତିମାଙ୍କ ନିଶ୍ଚିତ ସ୍ନେହ ବିଳାସ ପରିଲାଗେ, କିନ୍ତୁ ଲାଭ କ'ଣ ବିଚାରୀକୁ କହି, ସେ କ'ଣ ବୁଝିବ ? ତେଣୁ କହିବାକୁ ହୁଏ ମୁଣ୍ଡ ବିନ୍ଧୁଛି, ନିଦ ଆସୁନି କାହିଁକି, କାଲି ଡାକ୍ତର ମହାନ୍ତିଙ୍କୁ ପଚାରିବି । ଆଉ କେବେ ଝିଅ ରେଣୁ କାହିଁକି ରାତିଆଠଟା ଯାକେ ଫେରିଲା ନାହିଁ ବୋଲି ସେ ପଚାରିଲେ ପ୍ରତିମା ନିଜ କପାଳରୁ ଚିନ୍ତାର ରେଖାମାନ ଛଆରକରି ହସରେ ମିଶାଇ କହନ୍ତି—ରେଣୁ ଶିଖା ଘରକୁ ଯାଇଛି, ତମେ କାହିଁକି ବ୍ୟସ୍ତ ହେଉଛ ? ସୀତାନାଥ ବାବୁ ବ୍ୟସ୍ତ ନ ହେବାକୁ ଚେଷ୍ଟା କରନ୍ତି । ପରସ୍ପର ପ୍ରତି ଆସ୍ଥା ଓ ବିଶ୍ୱାସର ଆବହାଓ୍ୱା ସେ ସୃଷ୍ଟି କରିଛନ୍ତି ନିଜ ପରିବାରରେ—ନିଶ୍ଚିନ୍ତ ନିଶ୍ୱାସ ମାରିହୁଏ, ମନ ଦୁର୍ବଳ ହୁଏ ନାହିଁ ଅକାରଣ । ଆଜି ହିଁ ଫେରିଯିବେ ସେ, ବିନା କାରଣରେ କଥା ନରଖିବାର ଅର୍ଥ ନାହିଁ ।

ସୀତାନାଥ ବାବୁ ବାହାରି ପଡ଼ିଲେ । ସାଙ୍ଗରେ ଅଟାଚି ଓ ଛତା ଧରି ବିନୋଦ ଓ ବିପିନ ବାହାରିଲେ ବସଷ୍ଟାଣ୍ଡ ଯାକେ ବାଟେଇ

ଦେବାଲାଗି । ମୁହଁରେ ସମସ୍ତେ ଆଜି ହଠାତ ଉହୁଉହୁ କରୁଥିଲେ ହିଁ କାହାର ଭରସା ନଥିଲା ଯେ ସେ ସତରେ ଆତୁର ହେବେ । ଖୁଡ଼ୀଙ୍କୁ ପ୍ରଣାମ କଲେ ଓ ଖୁଡ଼ୀ କାନ୍ଦୁକୁ ମୁଣ୍ଡ ଲଗାଇ କାନ୍ଦୁନ ଉଠିଲେ । ସ୍ବର ଆଉ ବହୁଦିନ କାନ୍ଦର ସେଉଁଠି ଏ ପୁଣି ଖୋଲିଗଲା ଓ ସୀତାନାଥ ବାବୁ କେବଳ ନୁଆଁଇ ଠିଆହୋଇ ରହିଲେ—ସତେ ଯେମିତି ସେ ଘରର କାଠ ଖମ୍ବର ଗୋଟିଏ । ତେବେ ବେଶୀ ସମୟ ଏ ଦୃଶ୍ୟକୁ ଲମ୍ବିବାକୁ ନଦେଇ ସେ ଦାଣ୍ଡ ଆଡ଼କୁ ବାହାରିଲେ, କହିଲେ—ଯାଉଛି ଖୁଡ଼ୀ ।

ଖୁଡ଼ୀ କାନମେଞ୍ଚାକରୁ ମୁହଁ ଟେକି ନାକ କାନ୍ଦୁରା ସ୍ୱରରେ କହିଲେ—ଆସୁଥିବ ସୀତାନାଥ, କଥା ପଦକରେ କି ମନର ଦମ୍ଭରେ କ'ଣ ମାୟା ମମତା ସବୁ କାଟି ହୋଇଯାଏ ?

ସୀତାନାଥ ବାବୁଙ୍କ ପାଖେ ଏହାର କିଛି ଉତ୍ତର ନଥିଲା । ବାହାରିଗଲା ବେଳକୁ ମିଳ କୋଳର ସିଂଘାଣି ବଲବଲ ପିଲାଟିକ ତଳେବସାଇ ଦେଇ ମୁଣ୍ଡିଆ ମାରିଲା, ସୁଲୁସୁଲୁ ହୋଇ କହିଲା—ଆମକୁ ପର କରିଦେବ ନାହିଁ ଭାଇନା, ତମେ ଥିବାଯାକେ ଆମକୁ ଛେଉଣ୍ଡ ପର ଲାଗିବ ନାହିଁ ।

ଆଜି କକେଇଙ୍କ ସବା ସାନପୁଅ ବୃନ୍ଦାବନ ନୂଆ ଗଳା ଭାଙ୍ଗୁଥିବା ଫଟା ସ୍ୱରରେ କହିଲା—ଆସିବ ଭାଇନା ଗାଁକୁ, ନିଶ୍ଚେ ଆସିବ । ତା ଚେହେରାରେ ସୀତାନାଥଙ୍କୁ ଦିଶିଗଲା ଗତଥର କକେଇ ଅଣ୍ଟାରେ ଗାମୁଛା ଭିଡ଼ି ଗୁଡ଼ିଆର ପଞ୍ଜରହାଡ଼ ଦେଖାଇ ଚଣ୍ଡିଶିରା ବୁଲାଇ ତାଙ୍କୁ ଦାଣ୍ଡକୁ ଆଙ୍ଗୁଠି ଦେଖାଇ ଦେଇଥିଲେ—ଯା ବାହାର ଯା' ଦେଖିବି ମୋର କଣ କରିବୁ ।

ପ୍ରଣାମର ଯଥାବିଧି ଆଦାନ ପ୍ରଦାନ ଚାଲିଥିଲା ତାଙ୍କ ଆତ୍ମୀୟ-ସ୍ୱଜନଙ୍କ ସହିତ—ଯେଉଁମାନେ ଗାରକାଟି ଚିହ୍ନେଇ ଦିଆଯାଇଥିବା ନିଜ ପର ସମ୍ପର୍କ ଯେତେ ଯେସବୁ ହେଲେ ବି ଉଦ୍ଧକର ଜାଣନ୍ତି ନାହିଁ । ଅତୀତ ପାଇଁ ରାଗ କି ଅନୁଶୋଚନା ନଥାଏ ଏଠି—ଯାହା ଘଟିଯାଏ

ତାହା ବିଧିର ନିର୍ଦ୍ଦେଶ ଥିଲି ଓ ଭବିଷ୍ୟତ ରଖେନାହିଁ ବିଶେଷ ଉଦ୍‌ବେଗ ବା ବିସ୍ମୟ । ଦିନମାନ ଗଡ଼ି ଚାଲିଯାଏ ଅନ୍ୟନ୍ୟୋପାୟ ହୋଇ । ସୀତାନାଥ ବାବୁଙ୍କୁ ଘେରିଥିଲେ ନୂଆ ପୁରୁଣା ମୁହଁଗୁଡ଼ିଏ—ବହୁ ଅନୁଭୂତିର ସିଆର ପଡ଼ିଛି ସେସବୁରେ, ଅଥଚ କେଉଁ ଅଜ୍ଞାତ ଆଦେଶ ପାଇଲି ମାତ୍ରକେ ଯେମିତି ଗୋଟିଏ ଭାବ ଫୁଟିଉଠୁଛି ସବୁ ମୁହଁରେ ।

ସେ ଡାହାଣ ହାତଟି ପୁରୁଣା ବାଠ ଖୁଣ୍ଟଟି ଉପରେ ଥାପି ଠିଆ ହୋଇଥିଲେ ଓ କ୍ରମେ ତାଙ୍କ ଦେହର ଓଜନ କମ୍ପି ବି ଖୁଣ୍ଟ ଉପରକୁ ଆଉଜି ଆସୁଥିଲା । ଅନାବୃତ ଜନଷ୍ଟିଏ ଆବିଷ୍କାର କଲାପରି ସୀତାନାଥ ବାବୁ ଦେଖିଲେ ଖୁଣ୍ଟକୁ ଆଶ୍ରା କରୁଥିବା ଦେହ ସାମ୍ନାରୁ ତାଙ୍କର କେତେବେଳୁ ସଞ୍ଜୁ ଖସି ପଡ଼ିଛି । ବାହାରେ ଖରା ଝଲସୁଥିଲା ଓ କପାଳରୁ ଝାଳ ପୋଛୁ ପୋଛୁ ସୀତାନାଥ ବାବୁ ପିଣ୍ଡା ଉପରେ ବସି-ପଡ଼ିଲେ, କହିଲେ—ପାଣି ଗିଲାସେ ଦେ'ତ ମିନି ।

ପାଣିଗିଲାସକୁ ନେଇ ଆସିଲା ବେଳକୁ ମିନି ଦେଖିଲା ସୀତାନାଥ ବାବୁ କାନ୍ଦୁଛନ୍ତି ଆଉ ସମସ୍ତଙ୍କ ଭିତରେ ଜଣେ ପରି । କପାଳକୁ ହାତଟିଏ ଚାପି ଧରିଛି ମୁଣ୍ଡ ବନ୍ଧ ଉଠୁଥିଲା ପରି ଓ ହାବୁକା ହାବୁକା କୋହରେ ଦୋହଲି ଯାଉଛି ତାଙ୍କ ଦେହ । ଏଯାଏଁ ଦୂରରୁ ରହିଥିବା ଶୋକସନ୍ତପ୍ତ ଆତ୍ମୀୟ ସ୍ୱଜନ କାଃଶଙ୍କ ଭାବେ ତାଙ୍କ ପାଖକୁ ଲାଗିଆସିଛନ୍ତି ଇତି ମଧ୍ୟରେ । ସୀତାନାଥ ବାବୁ ତାଙ୍କ ମନର ଅନୁଶାସନ, କାର୍ପଣ୍ୟ ସବୁ ଭୁଲି ଯାଇଥିଲେ । ତାଙ୍କର ଠିକ୍ ପିଠି ପାଖକୁ ଶ୍ରେଷ୍ଠ ପିଲାଟିର କଅଁଳିଆ ଗଳାର ଖୋଲାକାନ୍ଦ ସେ ଶୁଣି ପାରୁଥିଲେ । ହାତ ପାପୁଲି ତଳେ ଚକ୍‌କଣ ତେଲିଆ କାଠଖୁଣ୍ଟ । ଦାଣ୍ଡଆଡ଼ୁ ସ୍ୱରଟିଏ ଭାସିଆସୁଛି କାହାର—କଡ଼ା ଶାସନର ସ୍ୱର ବାପାଙ୍କର—ଦିଅନାହିଁ ତାକୁ କିଛି, ଜମା ଶୁଣନାହିଁ ତା କଥା, ବଡ଼ ଜିଦ୍‌ଖୋର ହେଉଛି ଟୋକା । ମାଡ଼ରେ ଫୋଡ଼ି ଉଠୁଛି ପିଠି ଓ ସକାଳୁ ନ ଖାଇଥିବା ଭୋକରେ ପେଟ ଆଉଟି ହେଉଛି । ଆଖି ବୁଜି ଦାନ୍ତ ଚାପି ସେ ଦୁଇହାତ କୁଣ୍ଢାଇ ଧରିଥିବା ଖୁଣ୍ଟକୁ କହୁଛନ୍ତି— କାନ୍ଦିବି ନାହିଁ, ଜମା କାହାର କଥା ଶୁଣିବି ନାହିଁ··· । ଆଉ ତାପରେ ତାଙ୍କ ମୁହଁରେ ବୋଉର ନରମ ଶାଢ଼ୀ ଛୁଇଁଲା ଓ

ପିଠିରେ ବୋଉର ହାତ—ଗୁଲ୍ ଖାଇବୁ ଗୁଲ୍ ଏମିତି ଜିଦ କରନ୍ତୁ ? ଆଜି ତାଙ୍କ ଗଳାରୁ ଆଗେ ଖୋଲି ଫାଟିପଡ଼ୁଚି ଯେତେକ ତଣ୍ଟି ତଳେ ମଡ଼ାଯାଇଥିବା ରୁଦ୍ଧ କୋହ ।

ଯେମିତି ପିଣ୍ଡାରେ ବସି ଉଷୁମ ଆଖି ଲୁହଯାକ ନିର୍ବିଘ୍ନରେ ବହି-ଗଲା ବେଳେ ତାଙ୍କୁ ଆହୁରି ଦିଶିଗଲା କେଉଁ କେତେ ଦିନର କଥା କେଜାଣି—ତାଙ୍କ ଭାଗ ମିଠେଇ ପଡ଼ିଶାଘର ରଘୁ ଛଡ଼େଇ ନେଇ ଧାଇଁ ପଳାଇଗଲା ବେଳେ ହାତ ଗୋଡ଼ ଛୁଟି ନିଷ୍ଫଳ ଆକ୍ରୋଶରେ ସେ ରଡ଼ି ଛୁଡ଼ୁଥାନ୍ତି—ତାଙ୍କ ବଧା ଗୋଇଠାମାନ ପଡ଼ୁଥାଏ ପାଖ ଲୋକଟି ଉପରେ ଯିଏ ତାଙ୍କୁ ବୁଝାଇବା ପାଇଁ କୋଳେଇ ନେବାକୁ ଚେଷ୍ଟା କରୁଥାଏ । ଆଜି ଦିଶିଲେ ଦୁଃସ୍ଥ ଦୁର୍ବଳ କକେଇ ଯିଏ ନିଜ ଭାଗଟି ପାଇଁ, ପରିବାରଟି ପାଇଁ ହାତ ଗୋଡ଼ ବାଡ଼େଇ ଯାଉଥିଲେ ପାଖଲୋକ ସମସ୍ତଙ୍କ ଉପରେ ।

କାନ୍ଧ ଉପରେ ହାତପାପୁଲି ସହିତ କାହା ସ୍ୱର ଶୁଭିଲା—ଉଠ ଭାଇନା, ଗାଡ଼ି ବେଳ ହୋଇଯିବ । ସୀତାନାଥ ବାବୁ କିନ୍ତୁ ପୋତି ହୋଇ ଯାଉଥିଲେ ଏଯାଏ ନିରାପଦରେ ଥାକକରା ଯାଇଥିବା ଅନୁଭୂତି ସବୁର ଅଗ୍ନନକ ଭୂଷୁଣ୍ଡା ବାଳଗଦା ତଳେ, ସମର୍ପି ହୋଇଯାଉଥିଲେ କେଉଁ ସ୍ରୋତର ଭଉଁରୀ ତଳେ ଯେ କିଛୁହିଁ ଯେମିତି ତାଙ୍କର ଅକ୍ତିଆରରେ ନଥିଲା । ଅଧରାତିରେ ନିଦ ଭାଙ୍ଗିଗଲା ବେଳକୁ ପାଖରେ ବୋଉ ନାହିଁ—ନିଦ ଛୁଡ଼ୁ ନାହିଁ କି ଗୁନ୍ଥାଁ ଅସହାୟପଣ ଛୁଡ଼ୁ ନାହିଁ ।

କେତେବେଳ ଧରି ମୁଣ୍ଡ ପୋତିଲା ପରେ କିନ୍ତୁ ମୁଣ୍ଡ ଉପରେ ଦେଇ ପର୍ବତ ପ୍ରମାଣ ଲହଡ଼ିମାନ ଚୁଲିଗଲା ଓ ସୀତାନାଥ ବାବୁଙ୍କ ମୁଣ୍ଡ ଭିତରୁ କୁହୁଡ଼ି ସବୁ ସଫା ହୋଇଆସିଲା । ସେ ଶାନ୍ତ ଭାବେ ସ୍ୱୀକାର କରିଗଲେ ଏଥର—ବେଶ୍, ମୁଁ ମାନୁଛି, ମୋର ଏଇ କୋହ ଯାହା ସହିତ ମୁଁ ମିଛଟାରେ ଲଢ଼ୁଥିଲି, ତାହା ମୋର ଏଇ ଗାଁ ମାଟି ପାଇଁ, ମୋର ଅଣଲେଉଟା ପିଲାଦିନ ପାଇଁ, ଅଳ୍ପଦିନ ଆଗରୁ ସମସ୍ତଙ୍କୁ ମରଣ ପ୍ରତି ଚେତାଇ ଦେଇ ଯାଇଥିବା ବଚରା ଲୋକଟି ପାଇଁ, ଆଉ

ମୋ ଛଡ଼ା ଅଣନିଶ୍ୱାସିଆ ଏକୁଟିଆପଣ ପାଇଁ—ମୋ ପାଇଁ । ମୋ ପାଇଁ ।

ସୀତାନାଥ ବାବୁ ଉଠି ଠିଆ ହେଲେ ଓ ରୁମାଲ କାଢ଼ି ଆଖି ନାକ ପୋଛୁ ଚଷମା ପିନ୍ଧିଲେ । ବାହାର ଯାଉ ଯାଉ ଫେରିପଡ଼ି କାନ୍ଧ ଲିଭି ଆସିଥିବା ମୁହଁମାନଙ୍କୁ ଚାହିଁଲେ କ'ଣ କହିବେ ବୋଲି, ପୁଣି ଗଳା ଖଙ୍କାରି କହୁ ନ କହୁ ଆଗକୁ ଗୋଡ଼ ବଢ଼ାଇଲେ ଗାଁର ଧୂଳିଆ ସଡ଼କ ଆଡ଼େ । ପଛରେ ଗୋଟିଏ ଘରର ଗ୍ରୁପ ଫଟୋର ଭଙ୍ଗାଯୋଡ଼ା ସମ୍ପର୍କ ଭିତରୁ ବାହାରି ଆସିଲେ—କହୁ ସମସ୍ତ ପଛେ ପୁଣି ଖଞ୍ଜି ହୋଇଯିବେ ଆଉ ଗୋଟିଏ ସମ୍ପର୍କର ନକ୍ସା ଭିତରେ ଦୁଇଅଙ୍କକୁ ଯୋଡ଼ୁଛି ମଝିରେ ନାଳି ଧୂଳିଆ ସଡ଼କ—ସେ ନିଜେ । ତଳକୁ ନିମଗ୍ନ ହୋଇ ଚାହିଁଲା ବେଳକୁ ଦିଶୁଛି ପାଦ ଚାଲୁଛି ଆପେ ଆପେ, ଜାଣି ହେଉନାହିଁ ଗୋଡ଼ ସଡ଼କର ନା ତାଙ୍କ ନିଜର । ହାତ ବଢ଼ାଇଲେ ଛୁଇଁହେବ ନିଜ ମୁଣ୍ଡ, ଜାମା, ପେଣ୍ଟ, ତେଲଆଖୁଣ୍ଟ, ସ୍ତ୍ରୀ ପିଲାଙ୍କ ନିଶ୍ଚିତ ଅଶ୍ୱାସ—କିନ୍ତୁ ସଡ଼କରେ ଚାଲୁଥିବା ଏ ଦେହ, ପାଦତଳୁ ଧୂଳିଉଠି ନାକରେ ବାଜୁଥିବା ଶୁଖିଲା ଗନ୍ଧ, ଏ ସବୁ ତାଙ୍କର ଅତି ନିଜସ୍ୱ, ଆଉ କାହାର ନୁହେଁ । ମଝିମଝିରେ ଏମିତି ଝୁଣ୍ଟି ପଡ଼ିଲା ପରି ସମସ୍ତଙ୍କ ଭିତରେ ପୁଣି ସଭିଙ୍କୁ ଗୋପନରେ ସେ ନିଜକୁ ସମର୍ପି ଦେଉଥିବେ କେଉଁ ଅଜ୍ଞାତ ଆଦ୍ୟଅନ୍ତ ନଥିବା ଅନୁଭୂତିର ଲହଡ଼ିମାନଙ୍କ ହାତରେ—ସ୍ରୋତ ଅବସର ତଳେ ପୁଣି ଝାଡ଼ଝୁଡ଼ ବାଟ ଚାଲୁଥିବେ ଏକୁଟିଆ ।

—ଭାଇନା ବସ୍ ଆସିଗଲା—ବିପିନର ଉଦବେଗ ସ୍ୱର ସେ ଶୁଣିଲେ । ବିପିନ ବସ୍‌କୁ ହାତ ଦେଖାଇ ଦୌଡ଼ିବା ଆରମ୍ଭ କରିଦେଇ ଥିଲା, ଓ ପାଟି କଲା ପଛକୁ ଚାହିଁ—ଟିକିଏ ଶୀଘ୍ର ଆସ ଭାଇନା । ସୀତାନାଥ ବାବୁ ଧଇଁସଇଁ ହୋଇ ଝଣ୍ଟିଦଉଡ଼ ଦେଉଥିଲେ ।



# ଫାଁପାବଳ

ସକାଳ ଦଶଟା ହେବ । ମନୋଜ ବିଛଣା ଉପରେ ବସି ଆଗରେ ସୁଟକେଶଟାର ଦରଖୋଲା ଜିନିଷ ପତ୍ର ଆଡ଼େ ଅନେଇଲା ।

ଆଜି ଭଲ ଦିନଟିକୁ କାହିଁକି ଭଲ ଭଣ୍ଡୁର କରିଦେବାକୁ ବସିଛି ବନୁ । ସେ ଇଚ୍ଛା କରିଥିଲେ ଏ ଛୋଟ ଅପ୍ରୀତିକର ଘଟଣାକୁ ଟାଳି ପାରିଥାଆନ୍ତା । ତା ହୋଇଥିଲେ ଏତେବେଳକୁ ବାଥ୍‌ରୁମରୁ ତା ଗାଧୋଇବାର ପାଣି ସାୱାର ସହିତ ହାଲୁକା ଗୀତ ବି ଶୁଭୁଥାଆନ୍ତା । ଏତେଦିନୁ ନଗ୍ରୁଟିଆ ପଡ଼ିଥିବା ଘରଟା ଉଲୁସି ଉଠୁଥାଆନ୍ତା ।

ସେ କଣ ଘର ନ ଉଲୁସୁ ବୋଲି ଚାହୁଁଛି ? ତା ନ ହେଲେ ଆସିଲାବେଳୁ ତାହାର ତରଫରୁ ହିଁ ଉଣା ପଡ଼ୁଛି କାହିଁକି ।

ବନୁ ଆଜି ସକାଳ ଟ୍ରେନରେ ଆସି ପହଞ୍ଚୁଛି, ବାପଘରକୁ ଯାଇଥିଲା ସେ ଫାପାବଳ ଲାଗି । ସେ ଆସିବ ବୋଲି ମୁଁ ଅଧୀର ହୋଇ ପ୍ରତୀକ୍ଷା କରୁଥିଲି । କାଲି ରାତି ସାରା ଥରକୁ ଥର ନିଦ ଭାଙ୍ଗିଲାବେଳେ ମୁଁ ବନୁକୁ ହିଁ ଚାହିଁଥିଲି । ଆଜି ସକାଳେ ପ୍ଲାଟଫର୍ମରେ ଟ୍ରେନ ଲାଗିବାର କେଇ ସେକେଣ୍ଡ ଭିତରେ ତାକୁ ଯେତେବେଳେ ମୁଁ ଠଉର୍ କଲି, ସାରା ଟ୍ରେନ ସମେତ ଷ୍ଟେସନର ଭିଡ଼ କଣ ମୋ ଲାଗି ଉଭେଇ ଯାଇନଥିଲା । ଟ୍ରେନ ଅଟକିବା ବେଳକୁ କବାଟ ମୁହଁରେ ଠିଆ ହୋଇ ସେ ହାତ ଟେକି ହଲାଇଲା ମୋ ଆଡ଼େ, ତାର ଆର ହାତଟା ବି ସୁଟେଇ ସମେତ ଅଧା ଉଠି ଯାଇଥାଏ ଶୂନ୍ୟକୁ—ସତେକି ଡେଇଁ ପଡ଼ିବାକୁ ବସିଛି ସେ ମୋ କୋଳକୁ ଛୋଟ ପିଲାଟିଏ ପରି ।

ତଳକୁ ଓହ୍ଲେଇ ସେ ପ୍ରଥମେ ପଚାରିଲା—"ଭଲ ଅଛ ତ ?" ଆଉ ଭଲ ଅଛି ବୋଲି ଉତ୍ତର ପାଇଲାକ୍ଷଣି—"ତାହେଲେ ଟେଲିଗ୍ରାମ କାହିଁକି କରିଥିଲ ?" ଏଥର ଉତ୍ତରରେ ମୋର କେବଳ ହସରେ ସେ ସନ୍ତୁଷ୍ଟ ହେଲା ଭଳି ଜଣାଗଲା ନାହିଁ ।

ଫେରିଲାବେଳେ କାର୍‌ରେ ପଚାରିଲି—"ଘଣ୍ଟାଏକ ଆଗରୁ ତମକୁ ଫେରି ଆସିବାକୁ ହେଲା ବୋଲି ମନ ଦୁଃଖ କଲ ?"

ସେ ଶୁଣିଲା କି ନାହିଁ କେଜାଣି, ସେମିତି ବାହାରକୁ ଅନେଇ ରହିଲା । ପ୍ରଶ୍ନଟି ଆଉ ଥରେ ପଚାରିବାକୁ ମୋର କାହିଁକି ସାହସ ହେଲା ନାହିଁ । ତେଣୁ ପଚାରିଲି—"ପୁଅକୁ ଛୁଟି ଆସିଲା, ତମକୁ ଖୋଜିବନି ତ ?"

ସେମିତି ବାହାରକୁ ଅନେଇ ସେ ଉତ୍ତର ଦେଲା—'ତାକୁ ଏଥର ଛୁଟିଆସିବ ବୋଲି ତ ଠିକ୍ ହୋଇଥିଲା । ସେଠି ସ୍କୁଲରେ ନାଁ ଲେଖେଇ ଦେଇଛ ପରା !"

ସିଏ ଅବଶ୍ୟ ମୋ ପ୍ରଶ୍ନର ଉତ୍ତର ନୁହେଁ, ତଥାପି ଆଉ କିଛି କହିଲି ନାହିଁ । ତାର ବାହାରକୁ ନିର୍ନିମେଷ ଅନେଇ ଥିବା ମୁହଁଟି କେମିତି ଉଦାସ ଦିଶୁଥିଲା । ମୋ ପୁଅର ମୁହଁଟି ମୋତେ ମନେ ପଡ଼ିଲା, ଆଉ ଗାଡ଼ି ବ୍ରେକ କରି ବନୁକୁ ଛାତିରେ ଜାକି ଗେଲ କରିବାକୁ ମନ ହେଲା । ତା କିନ୍ତୁ କଲି ନାହିଁ ।

କହିଲି—"ଧାନ କ୍ଷେତ ବଡ଼ ସୁନ୍ଦର ଦିଶୁଛି, ନା ବନୁ ? ଅଜି ମୁଁ କିନ୍ତୁ ଷ୍ଟେସନକୁ ଗଲାବେଳକୁ ଜମା ଲକ୍ଷ୍ୟ କରି ନ ଥିଲି, ଜାଣ ।"

ଏଥର ବନୁ ମୋ ଆଡ଼େ ଅନେଇ ହସିଲା, ଆଉ କହିଲା—"ଏମିତି ଟେଲିଗ୍ରାମ ନ କରି ଟିକିଏ ଆଗରୁ ଚିଠିଟିଏରେ ଆସିବାକୁ ଲେଖି ଦେଇଥିଲେ ଚଳି ନଥାନ୍ତା ? ଅନ୍ତତଃ ମୁଁ ଏତେ ଚିନ୍ତା ତ କରି ନଥାନ୍ତି ।"

ମୁଁ ତା ହାତ ଉପରେ ହାତ ଥୋଇ କହିଲି—"ଆଇ ଏମ ସରି ବିନୁ ! ଆଉ ତା'ପରେ କୈଫିୟତ୍ ଦେବା ଭଳି ଭଳି କହି ପକାଇଲି—"ଦୀପାବଳି ପାଖେଇ ଆସିଲା ବେଳକୁ ହିଁ ଘଟଣା ବଡ଼ ନଗୁଣ୍ଠିଆ ଲାଗିଲା ସତ କହୁଛି । ବଡ଼ ଇଚ୍ଛା ହେଲା ଦୀପାବଳି ବେଳକୁ ତମେ ଫେରି ଆସନ୍ତ କି ଦୁହେଁ ଏକାଠି ପାଳନ୍ତେ ।"

ବିନୁ ଅଳ୍ପ ହସିଲା, ଆଉ ମୋ ହାତ ତଳୁ ତା ହାତ ଆସ୍ତେ ଖସେଇ ନେଲା ତା ବାଳ ସାଉଁଳିବା ଲାଗି । ହେଲେ ମୋର ମନେ ହେଲା ଉଡ଼ୁଥିବା ବାଳକୁ ଆକଟିବା ହିଁ ତାର ଉଦ୍ଦେଶ୍ୟ ନଥିଲା ।

ଘରେ ପହଞ୍ଚିବା ପରେ ସେ ସବୁଥର ପରି ଜିନିଷପତ୍ର ଗାଡ଼ିରୁ ନେଇ ଭିତରେ ରଖାଇଲା । ମୋର ଆଉ ତର ସହିଲା ନାହିଁ, ତା ହାତ ଟାଣି ନେଇ ଦେଖାଇଲି, କହିଲି—"ତମେ ଆସିବ ବୋଲି ଘର କେମିତି ସଜଡ଼ା ହୋଇଛି ଦେଖ ।" ସେ ଘରଆଡ଼ ବୁଲି ପୁରୁଣା ଜିନିଷପତ୍ର ଘୁଞ୍ଚାଯାଇ ନୂଆ ବାଗରେ ସଜଡ଼ା ଯାଇଥିବା ଦେଖିଲା, ଖୁସି ହେଲା । ଶୋଇବା ଘରେ ପଚାରିଲା—"ଏଠି କ'ଣ ନୂଆ ଦେଖୁଛ କହ ।"

ସେ ଫୁଲଦାନୀକୁ ଅନେଇ ଉଜଳିଲା ହସରେ କହିଲା—"ଇସ୍, ଏତେ ସୁନ୍ଦର ଫୁଲଗୁଡ଼ାଏ, କୋଉଠୁ ଆଣିଲ ?"

"ଆଉ ଗୋଟାଏ ଜିନିଷ ତମେ ତଥାପି ଦେଖୁନାହଁ ।" ମୁଁ କହିଲି—ଆଉ ନୂଆ ଫ୍ରେମ୍ କରି କାନ୍ଥ ଥାକରେ ରଖା ଯାଇଥିବା ଆମ ଯୋଡ଼ି ଫଟୋ ଦେଖାଇଲି । ଫଟୋ ଫ୍ରେମ୍‌ଟା ଦୁଇବର୍ଷ ତଳେ ପୁଅ ହାତରେ ଭାଙ୍ଗି ଯାଇ ପଡ଼ି ରହିଥିଲା । ବିନୁ ଯାଇ ଦୁଇ ହାତରେ ଫଟୋଟା ଉଠାଇ ଅନେଇ ରହିଲା ହସିଲା ମୁହଁରେ ।

ତାପରେ ଏଇ କିଛି ସମୟ ଆଗରୁ, ସୁଟକେଶରୁ ଜିନିଷପତ୍ର କାଢ଼ୁଥିଲା ବିନୁ, ମୁଁ କହିଲି—"ପୁଅକୁ ଛାଡ଼ି ଆସିଲ ଯେ ବିନୁ, ଏଥର ଘରେ ବେଶୀ ବୋର୍ ଲାଗିବନି ତମକୁ ?"

ଖୋଲା ବାକ୍ସରୁ ମୁହଁ ଟେକି ଦୃଷ୍ଟିରେ ନିଆଁ ଛୁଟିଦେଇ ବିନୁ ଉତ୍ତର ଦେଲା—"ମୋ ବୋର୍ଡମ୍ କଥା ଖିଆଲ ରଖିଛ ତେବେ, ନୁହେଁ ! ସେଥିଲାଗି ମିଛଟାରେ ଘାଘାବଳି ଆଗରୁ ଡକେଇ ଆଣିଲ !"

ତା ଶେଥା ଗୋରା ମୁହଁଟି ରକ୍ତ ଚଢ଼ି ନାଲି ପଡ଼ିଯାଇଥିଲା । ନାକପୁଡ଼ା ଫୁଲେଇ ସେ ଏଥର ଉଠିଯାଇ ତା ଲୁଗାପଟା ନେଇ ବାଥ୍-ରୁମ୍କୁ ଚାଲିଗଲା । କିଛିଦିନ ପୂର୍ବରୁ ମୁଁ ଯେତେବେଳେ ତାକୁ ଚିଠିରେ ଫେରିବା କଥା ଲେଖିଥିଲି, ସେ ଲେଖିଥିଲା ଯେ ଅନେକ ଦିନ ପରେ ଏଥର ସେ ଘାଘାବଳି ଦାଣ୍ଡିରେ ପାଳିବାକୁ ଚାହୁଁଛି ।

ଦ୍ୱିପ୍ରହର ବେଳ । ବିନୁ ଏକୁଟିଆ ଯୋଡ଼ା ପଲଙ୍କ ଉପରେ ଗଡ଼ପଡ଼ ହେଉଥିଲା, ଆଉ ତା ଆଖି ଛାତ ପଙ୍ଖା ଝରକା ବାହାର ଗଛ ଇତ୍ୟାଦି କେତେ ଜାଗାରେ ପହଁରିଯାଇ ଥରକୁ ଥର ଫେରି ଆସୁଥିଲା କାନ୍ଥ ଥାକ ଉପରେ ରଖାଯାଇଥିବା ନୂଆ ବନ୍ଧେଇ ଯୋଡ଼ା ଫଟୋଟି ଉପରକୁ ।

ଶୋଇବା ଘରେ ନିଜ ବିବାହ ବେଳର ଯୋଡ଼ା ଫଟୋ କାହିଁକି ରଖନ୍ତି ଲୋକେ ? ଆପଣାକୁ ମନେ ପକେଇ ଦେବା ଲାଗି ? ଆକଟିବା ଲାଗି, ଆଶ୍ୱାସନା ଦେବା ଲାଗି ?

ଘର ସଜଡ଼ା ହେଇଚି । ଫୁଲ ସଜା ଯାଇଚି । ସବୁ ହେଇଚି ମୋର ସମ୍ଭାଷଣ ଲାଗି, ମୋତେ ଖୁସି କରିବା ଲାଗି । ଟେଲିଗ୍ରାମ୍ କରି ମୋତେ ଡକାଯାଇଚି, ଶୀଘ୍ର ମୋତେ ଏଇ ଘରେ ପାଇବା ଲାଗି !

କାଲି ଟ୍ରେନ୍ରେ ମୋତେ ଏତେ ବ୍ୟସ୍ତ ଲାଗୁଥିଲା ଯେ ମୋ ଘର କଥା ଜମା ମୋ ମନକୁ ଆସିନାହିଁ ! ଏମିତିକି ସଦ୍ୟ ଛାଡ଼ି ଆସିଚି ଚିକୁକୁ, ତା କଥା ବି ଭାବିନାହିଁ । ରାତି ସାରା ମୁଁ ଶୋଇପାରି ନାହିଁ । କେତେଥର ପର୍ସରୁ କାଢ଼ି ଟେଲିଗ୍ରାମ୍ଟି ପଢ଼ିଚି—'ଯେତେଶୀଘ୍ର ସମ୍ଭବ ଫେରିଆସ ପ୍ଲିଜ୍ !' କଣ ହେଇଥାଇପାରେ ! ଦେହ ଅସୁସ୍ଥ ? ନା ହେଇପାରିଥାଏ ଖାଲି ପିଲାଳିଆମୀ । ଆଗ ଦିନମାନଙ୍କ ଭଳି ସୁଆଗ ? ବାପା କହିଲେ—

‘କିଛି ତ କାରଣ ଲେଖି ନାହାନ୍ତି ମା, ଦୀପାବଳି ସରିଯାଉ ଯିବୁ ।’ ହେଲେ ବ୍ୟସ୍ତବ୍ୟସ୍ତ ଲାଗିଲା । ଟେଲିଗ୍ରାମ୍ କାହିଁକି କଲେ ? ତା ଛଡ଼ା ଦେହ ଖରାପ ଯଦି ଥାଏ, ସିଧାସଳଖ ନିଶ୍ଚୟ ଲେଖି ଦେବେନି କାଳେ ମୁଁ ବ୍ୟସ୍ତ ହେବି ବୋଲି । ସ୍ୱାଠାରୁ କମ୍‌ରେ ଆଉ କେମିତି ବା ଜଣାନ୍ତେ ?

ଷ୍ଟେସନ୍‌ରେ ଗାଡ଼ି ରହିଲାବେଳେ ଛାତି ଧଡ଼ ଧଡ଼ ହେଉଥିଲା । ବୋଧହୁଏ ମନୋଜ ଆସି ପାରି ନଥିବେ, ଖାଲି ଡ୍ରାଇଭର ନେବାକୁ ଆସିଥିବ ବୋଧହୁଏ । ଭିଡ଼ ଭିତରେ ଚଟ୍‌କିନି ଦିଶିଗଲା ତାଙ୍କ ଚେହେରା, ଟ୍ରେନ୍ ସାଙ୍ଗରେ ଖଣ୍ଡେ ବାଟ ଦଉଡ଼ି ଚାଲିଥିଲେ ସେ, ଏତେ ବଡ଼ ପାଟିରେ ଡାକିଲେ—‘ବିନୁ !’

କୁଲି ଜିନିଷ ଓହ୍ଲାଇଲାବେଳେ ସେ ଠିଆ ହୋଇ ମୋତେ ଗୋଡ଼ରୁ ମୁଣ୍ଡଯାଏଁ ଚାହିଁ ରହିଲେ—ସେ ଆଶ୍ୱାସ ଭିତରେ ବି ମୋତେ ଆଶ୍ଚର୍ଯ୍ୟ ଲାଗିଲା, କେତେଦିନ ପରେ ଏମିତି ଦୃଷ୍ଟି ଟିଏ ତାଙ୍କଠି ଦେଖୁଥିଲି ମୁଁ ! ସେଇ ଉଚ୍ଛୁଳା ପିଲାଳିଆ ହସ, ଓସାରିଆ, ଚାରିକୋଣିଆ, ଚଶମା ପିନ୍ଧା ମୁହଁ । ଗତବର୍ଷ ମୁଁ କିଣିଆଣି ଦେଇଥିବା ଟି-ସାର୍ଟଟା ପିନ୍ଧିଛନ୍ତି, ପିନ୍ଧି ନଥିଲେ ଚକମକିଆ ହୋଇଛି ବୋଲି କହି, କୋଉ ସନ୍ଧିରୁ ଏବେ ପୁଣି ଖୋଜି ବାହାର କଲେ କେଜାଣି !

ହେଲେ ତା’ପରେ ଗାଡ଼ିରେ ବସିଲା କ୍ଷଣି, ସରୁଆ ଖାଲି ଢିପ ପିଚୁ ରାସ୍ତାଟିରେ ଚାଳିଶ ମାଇଲ ଦୂର ପୋଟରା ଖାଦାନ୍ ସହରଟି ଆଡ଼କୁ ମୁହାଁଇବା କ୍ଷଣି ଛାତି ଭିତରଟା କ୍ଷୋଭରେ ରୁନ୍ଧି ହୋଇଗଲା ପରି ଲାଗିଲା । ଚାଲି ଆସିଲି ଦୀପ ଜଳ ଆଗନ୍ଦନଟାରେ, ଘର ଛାଡ଼ି, ଦିଲ୍ଲୀ ଛାଡ଼ି—ଶୁଖିଲା ଅଚିହ୍ନା ବାରମିଶା କଲୋନୀକୁ ।

କି ଦରକାର ଥିଲା ମୋତେ ଏମିତି ଡାକେଇ ଆଣିବାର ? ଦୀପାବଳିଟା ଆନନ୍ଦରେ କାଟିବାକୁ, ମୋ ନିଜ ସହର ସାଙ୍ଗ ସାଥୀ ମେଳରେ ଏତେ ଦିନ ପରେ ପାଳିବାକୁ ଦେଇପାରି ନଥାନ୍ତେ ମୋତେ ? ଏକୁଟିଆ ପଣରୁ ଡାକିଲେ ବୋଲି କହିଲେ । ମାନୁଛି ଏଥିରେ ବିରକ୍ତି

ହେବା ମୋର ସ୍ୱାର୍ଥପରତା । ବରଂ ଏତେ ବ୍ୟଗ୍ର ହୋଇ ମୋତେ ନେଉଛନ୍ତି ବୋଲି ଚନ୍ଦ୍ରିମାଂବ ସେଥିରେ ମୋର ଗର୍ବିତ ହେବାର କଥା । ତଥାପି, ଜାଣିଶୁଣି ମୋର ଏତେ ଟିକିଏ ଆନନ୍ଦକୁ କାହିଁକି ନଷ୍ଟ କରିବାକୁ ଚାହିଁଲେ ସେ ? ଏଠି ଖୁବ୍ ଖୁସିରେ ମୋର ଯେ କେତେବେଳେ ସମୟ କଟେ- ନାହିଁ, ଏ କଥା କଣ ତାଙ୍କୁ ଅଛପା ? ନା ସେଥିଲାଗି ନିଜଆଡ଼ୁ କିଛି ଚେଷ୍ଟା କରୁଛନ୍ତି ସେ ? ବରଂ ମୋ ଦୁଃଖକୁ ବଢ଼େଇଚନ୍ତି, ଆପଣା ଖିଆଲ ଲାଗି, ସଉକ୍ ଲାଗି !

ଦିଲ୍ଲୀରେ ଗଲା କେତେଦିନର ରହଣି ଭିତରେ ମୁଁ ମୋ ଦୁଃଖ ଭୁଲି ଯାଇଥିଲି । ଏଠିକାର ଅନିଶ୍ଚିତ ଜୀବନ, ଅବଶ୍ୟମ୍ଭାବୀ ଘୋଷର ଭବିଷ୍ୟତ, ସବୁ କଥା ଭୁଲି ଯାଇଥିଲି । ଏତେ ନିର୍ଦ୍ଦୟ ଭାବେ ମୋତେ ପଦ୍ମ ଦିନଟାରେ ଓଟାର ଆଣି ନଥିଲେ କି କ୍ଷତିଟା ହୋଇ ଯାଇଥାନ୍ତା ? କଣ କମ୍ ବେଶୀ ହୋଇ ଯାଇଥାନ୍ତା ଆଉ ଦି ଚାରିଦିନ ପରେ ଟେଲିଗ୍ରାମ୍‌ଟା କରିଥିଲେ ? ବା ସାଧାରଣ ଚିଠିଟିଏ ଲେଖିଥିଲେ ?

ଆଉ ପୁଣି ଏବେ ଦେଖ ! ହେଲା ବା ତାଙ୍କ ଆଶା ଅନୁଯାୟୀ ମୁଁ ମୋ ଘରକୁ ଫେରି ଆସି ଆନନ୍ଦ ଉତ୍ସାହରେ ଫୁଲି ଉଠୁନାହିଁ । ତା ବୋଲି ଖିଆପିଆ ସରିଲା କ୍ଷଣି ଗାଡ଼ି ଧରି ବାହାରି ଯିବେ ଏକୁଟିଆ । ପଦ୍ମ ଦିନଟାରେ ମୋତେ ଏକା ଛାଡ଼ିଦେଇ ଖାଲି 'ଯାଉଛି ବଜାର ଆଡ଼େ' ବୋଲି କହିବା ଯଥେଷ୍ଟ ମଣିଲେ ।

ଅପରାହ୍ଣ । ଭିତର ବାରଣ୍ଡାରେ ମନୋଜ ଏପାଖରୁ ସେପାଖ ଟହଲୁଥିଲା । ଗୃହକର୍ତ୍ତ୍ରୀ ଥୋଇଦେଇ ଯାଇଥିବା ଗୃହ ସରଞ୍ଜାମ ଟେବୁଲ ଉପରେ ସେମିତି ଅଣ୍ଡା ହେଉଥିଲା ।

ଆଉ ଟିକିଏ ପରେ ସଞ୍ଜ ହେବ । କୋଉଠି ସବୁ ବାଣ ଫୁଟା ଆରମ୍ଭ ହୋଇ ଗଲାଣି । ବନ୍ଦୁ ମୁହଁ ଫୁଲେଇ ଘର ଭିତରେ ବସିଛି । ପିଙ୍କୁ ଆସିନାଇଁ, ନହେଲେ ଅନ୍ତତଃ ତାଆରି ଲାଗି ପଦ୍ମଟି ପାଳି ହୁଅନ୍ତା । ପିଙ୍କୁ କୁ ବନ୍ଦୁ ଏଠି ରହିବାକୁ ଦେବ ନାଇଁ । ଏଠି ଆବହାଓ୍ୱା, ସାଙ୍ଗସାଥୀ ଭଲ ମିଳିପାରିବ ନାହିଁ ବୋଲି ତା ଜନ୍ମଠାରୁ ଅଧାଦିନ

ପିଲୁ ଢିଲ୍ଲୀରେ କଟାଇଛୁ । ଏଣିକି ବୋଧହୁଏ ଅଧିକାଂଶ ଦିନ ତାର ସେଇଠି କଟିବ । ବିନୁ ନିଜେ ବି ଯଦି ଏ ଜାଗା ଛାଡ଼ି ଯାଇ ପାରନ୍ତା, କେତେ ସୁଖୀ ହୁଅନ୍ତା ମୁଁ ଜାଣେ ।

ମୁଁ ବିନୁକୁ ଭଲ ପାଇଥିଲି, ଏବେ ବି ପାଏ । ସେବେ ତାର ପତଳା ଗୋରା ଚେହେରା, ଚଙ୍ଗ୍ ଚଙ୍ଗ୍ ଚଢ଼େଇ ପରି ହାବ ଭାବ ମୋତେ ଭଲ ଲାଗିଥିଲା । ସାନ ସାନ ସଉକ୍ ଆଉ ଇଂରାଜୀ କବିତା ପଢ଼ା ଫ୍ରଷ୍ଟ୍ରେସନ୍ ଭିତରେ ସବୁବେଳେ ମଜ୍ଜି ଥିବା, ଇଉନିଭରସିଟି ଲାଇବ୍ରେରୀରେ ଘଣ୍ଟା ପରେ ଘଣ୍ଟା ଅନାୟାସରେ କଟାଇ ଦେଉଥିବା ଓ ବହି ପୃଷ୍ଠାର ଶବ୍ଦମାନଙ୍କ ଲାଗି ଧାର୍ମିକ ମମତା ନେଇ ବଞ୍ଚୁଥିବା ସେଇ ନିରୁତା ଝିଅଟିକ ମୁଁ ଭଲ ପାଇଥିଲି । ତାଠାରୁ ବି ପ୍ରେମର ବିଶ୍ୱାସ ମୋତେ ମିଳିଥିଲା । ଏ ବଦଳି ଯାଇଥିବା ବାତାବରଣରେ ଟିକିଏ ଅଲଗା ରକମର ଦିଶୁଥିବା, ଅତି ପରିଚିତ ହୋଇ ଯାଇଥିବା ବିନୁକୁ ଏବେ ବି ମୁଁ ଭଲପାଏ ।

ଏଇ ଖଣି-ସହରର ରହଣିରେ ସେ ସୁଖୀ ନୁହେଁ । ମହାନଗରୀର ପବନରେ ହିଁ ସେ ନିଃଶ୍ୱାସ ନେଇ ଶିଖିଥିଲା, ସେଠି ତାର ବିଶ୍ୱାସମତେ ସୂକ୍ଷ୍ମ ସୁନ୍ଦର ଭାବେ ବଞ୍ଚୁଥିଲା, କେତେରକମର ହବି ଆଉ ସଉକ୍ ବଢ଼ାଇଥିଲା, ପୁଣି ପାଳି ପୋଷି ଆଗକୁ ବିକଶିତ କରିବ ବୋଲି ଆଶା ପୋଷିଥିଲା । ହେଲେ ସେଥିଲାଗି ମୁଁ କଣ କରିପାରିବି ?

ତାଛଡ଼ା ସେ ଯଦି ମୋତେ ଭଲପାଏ, ସାନ ଅପନ୍ତରା ସହରରେ କାହିଁକି ନୁହେଁ ? ମୋ ସହିତ ରହୁଥାଇ ବି ତାର ଏତେ ହତାଶା ଆସିଲା କୋଉଥିପାଇଁ ?

ଆଉ ଶେଷରେ, ରୁମା ବୋଷ୍‌କୁ ନେଇ ତାର ସନ୍ଦେହ, ଈର୍ଷା, ରାଗ । ଏମିତି ଗ୍ରେଟ ବାରମିଶା ସହରଟିର ବୋର୍‌ଡ୍ ଲୋକଙ୍କ ଭିତରେ ରୁମା ବୋଷ୍ ପରି ଏକାକୀ ଝିଅଟିଏକୁ ନେଇ କାହା ନାଁରେ ଗୁଜବଟିଏ ଉଠିଯିବା କଣ ନିହାତି ଆଶ୍ଚର୍ଯ୍ୟର କଥା ? ଆଉ ଏତେ ଲିବରାଲ୍ ଆଧୁନିକ ବିଚାରର ଥିଲା ପରି ଦିନେ ବିନୁର, ସିଏ କେମିତି ପୁଣି ତା

ପଡ଼ୁଶା ପାଞ୍ଚ ଜଣ ସ୍ତ୍ରୀଙ୍କ ଠାରୁ ଟିକଏ ଭିନ୍ନ ପରି ମନେ ହେଲା ତାଙ୍କୁ ତା ପ୍ରତିକ୍ରିୟାରେ ! ମୁଁ ତାକୁ ଏକାଧିକ ଥର କହିଚି, ତୁମ ସହିତ ଯଦିବା ମୋର ଦେଖା ସାକ୍ଷାତ ହୁଏ, ତା କେବଳ ସମସ୍ତଙ୍କ ଆଗରେ ଜଣାଶୁଣାରେ—ତା ବାହାରେ ନିର୍ଜନାରେ କେବେହେଲେ ନୁହେଁ । ଆଖି ଆଗରେ ଦେଖାଯାଉଥିବା ସେତିକି ହିଁ ଛଡ଼ା ଆଉ କିଛି ହେଲେ ନାହିଁ ସେ ସମ୍ପର୍କରେ ।

ମୁଁ ଜାଣେ ଏଥର ଗଲାବେଳେ ବିନୁ ସେଇ ରାଗ ନେଇ ହିଁ ଯାଇଥିଲା । ବିବାହ ପରେ ପରେ ଏଇଠି ବେ ର୍ ଧୋଇଗଲେ ପାଠପଢ଼ା ଆଳରେ, ପିଲା ଲାଗି ଆବହାଓ୍ୱା ଆଳରେ ସେ ଅନେକଥର ଯାଇ ବାପଘରେ ବେଶୀଦିନ କଟାଇଛି । ଏମିତିକି ବେଳେ ବେଳେ ମୋର ଭୟ ହୁଏ, ସେଠାକାର ଆକର୍ଷଣ ବହୁତ ବେଶୀ ହେଲେ ସେ ହୁଏତ ମୁ ଛୁଟି ଦେଇପାରେ ମୋ ସହିତ ଏଠିକାର ଜୀବନ ।

ସେଇଥିଲାଗି ଏଥର ଯେତେବେଳେ ସେ ଗଲା, ଆଉ ତା'ର ଛଟି ଗୁଡ଼ିକ ଭିତରେ ଦିନମାନଙ୍କ ତଫାତ୍ ବଢ଼ି ବଢ଼ି ଗଲା, ମୋର ହିମେ ଚିନ୍ତାରୁ ବଢ଼ି ଆଶଙ୍କାରେ ଦିନ କଟିଲା । ଶେଷକୁ ମୁଁ ଅତିଷ୍ଠ ହୋଇ ଟେଲିଗ୍ରାମ କରି ତାଙ୍କୁ ଡକେଇଲି । ସେଇ କଣ ମୋର ପ୍ରେମର ନିଷ୍ଠାର ପ୍ରମାଣ ନୁହେଁ ?

ଆଜି ଦିପ୍ରହରେ ଦୋକାନ ଦୋକାନ ବୁଲି ମୁଁ ସବୁଠୁ ସୁନ୍ଦର ମହନବଷ୍ଟି, ଫୁଲଝର, ସବୁଠୁ ଦାମିକା ବାଣ କିଣି ଆଣିଲି, ମିଠେଇ ଦୋକାନରୁ ବାଛି ବାଛି କିଣିଲି ବିନୁର ପ୍ରିୟ ମିଠାମାନ, ପୁଣି ସଇ ପଡ଼ିଶାଙ୍କୁ ଦିଆନିଆ କରିବା ଲାଗି ଅଲଗା ପ୍ୟାକେଟ । ବିନୁ ପର୍ବପର୍ବାଣୀ ଭଲ ପାଏ, ସବୁରକମ ଗ୍ରେଟକାଟିଆ ବ୍ୟବହାରିକ ନିୟମ ମାନି ସେ ପାଓ୍ୱାଲି ପର୍ବ ପାଳିବାକୁ ଚାହେଁ, କାରଣରେ ସେ କହେ ଯେ ପିଲାଦିନୁ ସେମିତି ସେ ତା' ଘରେ ଦେଖିଆସିଛି, ସେଇଥିଲାଗି ।

ଘରେ ପହଞ୍ଚି କାଠ ଟାବଲଟା ଆଗେ ଗାଡ଼ିରୁ ବୋହି ଆଣିଲି ଘର ଭିତରକୁ । ଡାକିଲି, ବିନୁ ଦେଖିଲା, କଣ ଆଣିଚି ତମଲାଗି ।

ବନ୍ଦୁ କେତେବେଳକେ ଉଠି ଆସିଲା, ଫଣ ଫଣ ମୁହଁ, ଅସଜଡ଼ା ବେଶରେ। ମୋତେ ପ୍ରକୃତରେ ବାଧିଲା। ଘାପାବଳରେ ବନ୍ଦୁ ନିଶ୍ଚୟ ନୂଆ ପିନ୍ଧେ, ସଞ୍ଜ ପୂର୍ବରୁ ଘରଦ୍ୱାର ସଜାଇ ଆପେ ସାଜ ହୋଇ ସାରିଥାଏ।

ତା ସାମ୍ନାରେ ମୁଁ କାଠ ବାକ୍ସ ମୁହଁରୁ କାଗଜ ଉଠାଇ ଦେଲି। ଗୋଟି ଗୋଟି କରି ମିଠେଇ ପ୍ୟାକେଟ କାଢ଼ି ତା' ପାଖେ ଟେବୁଲରେ ଥୋଇଲି, ରକେଟ ଲୁମ୍ଫି ବାଣର ପୁଡ଼ା ଖୋଲି ତାକୁ ପାଖକୁ ଟାଣିଆଣି କହିଲି—"ମୋତେ ଯଦି ଭଲପାଅ ବନ୍ଦୁ, ମୋ ସାଙ୍ଗରେ ଏକାଠି ଘାଓ୍ୱାଲି ପାଳିଲେ ତମେ ଖୁସି ହେବ। ମୋଠୁ ଦୂରରେ ନୁହେଁ, ଏଇଠି, ତମ ନିଜ ଘରେ। ଆଜ ତମେ ନିଜ ହାତରେ ଘାପ ସଜେଇବ, ଫୁଲଝରି ଜଳେଇବ, ପଡ଼ୋଶୀଙ୍କୁ ମିଠେଇ ବାଣ୍ଟିବ, ମୁଁ ଦେଖିବି! ତମଲାଗି ଲୁମ୍ଫି ଜଳେଇ ଦେବି, ହାବେଳୀ ଆକାଶକୁ। ମୋର କଣ କିଛି ହକ୍ ନାହିଁ ଘାପାବଳରେ?"

ବନ୍ଦୁ ତଳକୁ ମୁହଁ ପୋତିଲା, କିଛି କହିଲା ନାହିଁ। ମୋର ମନେ ହେଲା ମୋର ସବୁ କଥା ଯେମିତି ସେ ଶୁଣିନାହିଁ, ଶୁଣୁ ଶୁଣୁ ଅନ୍ୟମନସ୍କ ହୋଇ ପଡ଼ୁଛି। କହିଲି—"ପିଲୁ ନାହିଁ ବୋଲି ଘରଟା ନିଛାଟିଆ ଲାଗୁଛି, ନୁହେଁ ? ମୁଁ ବି ଭାବୁଥିଲି, ଠିକଏ ଗହଳି ନ ହେଲେ ବାଣ ଫୁଟାରେ ମଜା ଲାଗେ ନାହିଁ।"

ବନ୍ଦୁ ହଠାତ୍ ନିଜକୁ ମୋ ବାହୁରୁ ହୁଗୁଳାଇ ନେଲା, ମୋ ମୁହଁକୁ ସିଧା ଅନେଇ ଧାରୁଆ ସ୍ୱରରେ ପଚାରିଲା—"ତୁମ ବି ଏକୁଟିଆ ଥିବ ତା କ୍ୱାର୍ଟର୍ସରେ, ଡାକେଇ ପଠେଇବା? ଏକାଠି ବାଣ ଫୁଟାନ୍ତେ?"

ମୁଁ ଜଡ଼ ପାଲଟିଗଲି।

ସେଇଠୁ ମୋ ମୁଣ୍ଡକୁ ପିତ୍ତ ଚଢ଼ିଗଲା। କହିଲି—"ଓଃ! ଏଇଆ ତେବେ ତମ ମନରେ ଅଛି। ଏଇ ହେଉଛି ତମ ସଂସ୍କୃତି, ତମ ରୁଚିର ତମ ପାଠପଢ଼ା ଆଧୁନିକ ମନର ଅସଲ ରୂପ!"

କହୁ କହୁ ମୁଁ ବୁଲ୍ କାନ ଯାଇ ମୋ ଅଫିସ ଘରେ ପଶିଲି, ଫାଇଲପତ୍ର, ପୁରୁଣା ଚିଠି ତଛନଛ କରି ଘାଣ୍ଟି ଚଳି, ଖୋଜ ପକାଇଲି ଆଉ ଶେଷରେ ପାଇଲି । ତୁମାର ବାହାଘର ନିମନ୍ତ୍ରଣ କାର୍ଡ଼ । ନେଇଆସି ବାବୁର ହାତରେ ମାଡ଼ଦେଲି, କହିଲି—"ନିଅ, ପଢ଼ । ଲଭ ମ୍ୟାରେଜ୍ ହେଉଛୁ ତାର, ହନିମୁନ୍‌ରୁ ଫେରିଲେ ପାର୍ଟି ଦେବ ।"

ବାବୁ କାର୍ଡ଼ଟି ପଢ଼ିଲା ଚୁପ୍‌ଚାପ୍ ଠିଆ ହେଇ । ତା'ପରେ ସେଇଟି ତଳେ ପକେଇ ଦେଇ ଶୋଇବା ଘରକୁ ଚାଲିଗଲା । ମୁଁ ତାକୁ ଶୁଣାଇଲି ଭଳି ବାଣ ଫୁଲଝରି ବାକ୍ସକୁ ଗୋଟାଏ ଗୋଇଠା ପକେଇଲି ।

ସନ୍ଧ୍ୟା ଗଡ଼ି ରାତି ହେଇ ଯାଇଥିଲା । ବାବୁ ବିଛଣା ଉପରେ ନିଶ୍ଚଳ ବସି ଝରକା ବାହାରେ ଅଦୂରରେ ଦିଶୁଥିବା ଘରମାନ, ହାବେଳୀ ବାଣମାନ ଆଉକୁ ଅନେଇଥିଲା । ସଞ୍ଜବେଳୁ ନିଜକୁ ବାରମ୍ବାର ଚେତାବନୀ ଦେଲା ପରେ ବି ଘରଟିଏ ଲଗାଇବା ପାଇଁ ସେ ଉଠିପାରି ନାହିଁ । ଗୃହର ଟୋକା ଆଜ ଲୁଟି ନେଇଥିବା କଥା ମନେ ଥାଇ ବି ଘୋଷେଇବାକୁ ସାହସ କରିନାହିଁ । ଜାଣିଶୁଣି ଜଦ୍ ବା କୌଣସି ରାଗରେ ମୁହଁ, ହାତ ଗୋଡ଼ ସମେତ ତାର ସମ୍ପୂର୍ଣ୍ଣ ଦେହଟି ଯେମିତି ଗ୍ରୀଷ୍ମରେ ତଳେଇ ଶୀତଳ ଲୁହା ମୂର୍ତ୍ତିଟିଏ ।

ମନୋଜ ବାହାର ବାରଣ୍ଡାରେ ବସିଛନ୍ତି, ନା ତାଙ୍କ ଅଫିସ୍ ବଖରାରେ କେଜାଣି ? ସେ ହୁଏତ ଗୁହୁଁଛନ୍ତି ମୁଁ ଯାଇ ତାଙ୍କୁ କ୍ଷମା ମାଗିବି, ମୋର ଭୁଲ୍ ଧାରଣା ପାଇଁ ଲଜ୍ଜିତ ହେବି । ଯଦି ବା ମୁଁ ତାଙ୍କ ପାଖକୁ ଯାଏ, ସତରେ ସେ କଣ ମୋତେ କ୍ଷମା କରିଦେବାର ଛଳନା କରିପାରିବେ ?

ଆଜ ଘର ବଳ ଉଦନଟିକୁ ମୁଁ ନଷ୍ଟ କରିଦେଲି, ତାଙ୍କର ଏତେ ଯତ୍ନର ଆୟୋଜନ ସବୁ ଭଣ୍ଡୁର କରିଦେଲି । ଜାଣିଶୁଣି ଭଣ୍ଡୁର କରି-ଦେବାକୁ ମୋତେ କଣ ଖୁସି ଲାଗୁଥିଲା ? ମୁଁ ତ ସବୁଦିନେ ତିଆରି କରିବାକୁ ଚାହିଁଛି । ଏମିତିକ କେତେ ସମୟ ଆଉ କଷ୍ଟ କରି ଯାହା ସବୁ ଦିନେ ଗଢ଼ିଥିଲି, ସବୁକିଛୁ ଅନାୟାସରେ ଭାଙ୍ଗି ରୁଜ ଫିଙ୍ଗି ଦେଇଛି ଆଉ

କିଛି ଗଢ଼ିବି ବୋଲି । ଯାହାକୁ ବଞ୍ଚିବା ବୋଲି ବୁଝିଥିଲି, ବିଶ୍ୱାସ କରିଥିଲି, ସେ ସବୁ ହାତ ପାହାନ୍ତାରୁ ଖସି ଚାଲିଗଲାବେଳେ ବେକନାଇଁ, ଯେତିକି ହାତରେ ରହିଲା ତାକୁ ହିଁ ପୁଣି ଗଢ଼ିଦେଇ ସମ୍ପୂର୍ଣ୍ଣଟିଏ କରି-ଦେବାକୁ ଚେଷ୍ଟା କରୁଛି ।

କିନ୍ତୁ ଯେଉଁ କାମରେ ଗଢ଼ିବା ଖାଲି ମିଛିମିଛିକା ବୋଲି ଜଣା ପଡ଼େ, କିଛିହେଲେ ସେଥିରୁ ତିଆରି ହୁଏ ନାହିଁ, ସେ ପରିଶ୍ରମ କରି ଚାଲିଥିବାର ଅର୍ଥ କଣ ?

ରୁମା ବୋଷ୍ କଥା ଯେତେବେଳେ ମୋ କାନରେ ପଡ଼ିଲା ସେତେବେଳକୁ ତାଙ୍କ ଅଫିସ୍ ସାରାର ଲୋକେ ଆଉ ଆମ ପାଇପଡ଼ଶାର ସମସ୍ତେ ସେ ଦିହିଁଙ୍କ ବ୍ୟକ୍ତିଗତ ବୋଧହୁଏ ଆଉ କିଛି ବିଷୟ ଆଲୋଚନା କରୁ ନ ଥିଲେ । ତା ସତ୍ତ୍ୱେ ସେ ରୁମା ସହିତ ବେଶୀ ବାଟ ଆଗେଇ ନାହାନ୍ତି ମୁଁ ଜାଣିଛି । କାହିଁକି ସେ ଆଗେଇଲେ ନାହିଁ ମୁଁ ଠିକ୍ ଜାଣି ନାହିଁ । ହୁଏତ ତାଙ୍କର ସାମାଜିକ ଭୟ ହୋଇଥିବ, ଅଥବା ରୁମା ନିଜ ଭବିଷ୍ୟତକୁ ଦେଖିଚାହିଁ ବାଟ ଚାଲିଥିବ ।

ରୁମା ସହିତ ଭେଟ ହେବା ପାଇଁ ତାଙ୍କର ଆଗ୍ରହ, ଅଫିସ୍ ଗଲା ବେଳେ ଦର୍ପଣ ଆଗରେ ତାଙ୍କର ନିଜ ଚେହେରା ପ୍ରତି ଦୃଷ୍ଟି, ସଞ୍ଜବେଳେ କାମ ଆଳରେ ଅଫିସ୍ ଆଡ଼େ ଚାଲିଯିବା, ସବୁ ମୁଁ ଦେଖିଥିଲି । ସହିଥିଲି ବି, କାରଣ କେମିତି ସେ ପରିସ୍ଥିତିର ମୁକାବିଲା କରିବାକୁ ହେବ ବୁଝି-ପାରି ନ ଥିଲି । ଆଉ ଗୋଟିଏ କାରଣ ସମ୍ଭବତଃ ଏଇଆ ଯେ ମୋର ଆଉ ନିଜ ଉପରେ ଆଗଭଳି ବିଶ୍ୱାସ ନ ଥିଲା । ମୋ ଉପରୁ ଆଗ୍ରହ କମିଯାଇଛି ବୋଲି ତାଙ୍କୁ ମୁଁ ଦୋଷ ଦେଇପାରୁ ନଥିଲି ।

ତା'ପରେ ସେଇ ବଙ୍ଗାଳୀ ଟୋକାଟି ଆସିଲା ନୂଆ ଆସିଷ୍ଟାଣ୍ଟ ଇଞ୍ଜିନିୟର ପୋଷ୍ଟରେ । ଶୁଣିଲି ରୁମା ତା ପଛରେ ପଡ଼ିଯାଇଚି, ଯୋଡ଼ି ହୋଇ ବୁଲୁଚି, ସିନେମା ଯାଉଚି ତା ସଙ୍ଗେ ।

ମନୋଜ ରୁମା ସହିତ ମିଳାମିଶା କରିବା ସହିଥିଲି, ହେଲେ ତାର ହଠାଦରରେ ତାଙ୍କର ଈର୍ଷା, ବିରସ ଭାବ, ଆଉ ସବୁଠୁ ବଳି

ତାକୁ ପୁଣି ମନେଇବାର ଚେଷ୍ଟା ମୁଁ ସବୁବେଳେ କରେ । ସେଇଥିଲାଗି ପୂଜାବନ୍ଦରର ମାସଟିଏ ଆଗରୁ ପର୍ବ ଆଳରେ ଚାଲିଗଲି ବାପ ଘରକୁ ।

ଘଣ୍ଟାଳି ! ବର୍ଷସାରାରେ ସବୁଠାରୁ ବଡ଼ ପର୍ବ ଆମ ଘରେ । ମାସକ ଆଗରୁ ପ୍ରସ୍ତୁତି ଆରମ୍ଭ ହୋଇଯାଏ । ଚୂନ ଧଡ଼ିଳା ଘର ସଫେଇ ଚାଲେ । ଆନନ୍ଦ ଉତ୍ସବର ଦିନଟିଏକୁ ପାଳିବା ଲାଗି ଆୟୋଜନ ହେଉ ଥିଲା ବୋଲି ମନେ ଅଛି ମୁଁ ବି ମାତିଯାଏ ସେ ଆୟୋଜନରେ । ଦିନା-କେତେ ଆଗରୁ ଦୀପ ଧୂଆଁ, ମିଠେଇ ତିଆରି, ବାଣ କିଣା—ସବୁଥିରେ କେତେ ଉତ୍ସାହ । ଘଣ୍ଟାଳି ଦିନ ସଞ୍ଜବେଳୁ ଦୀପ ଜଳାଏ ମୁଁ ମାଅଙ୍କ ସାଙ୍ଗରେ—ସେତିକି ହିଁ ବାସ୍ତବରେ ମୋର ଘଣ୍ଟାଳି । ତା'ପରେ ଆମ ବଡ଼ ପରିବାରର ସବୁ ପିଲାଙ୍କ ଭିତରେ ବାଣର ଭାଗ ବଣ୍ଟା ହୁଏ । ମୁଁ ମୋ ଭାଗର ବାଣ ଗଣି ଗଣି ନିଏ, ବାଦ ବି କରେ ଅନ୍ୟମାନଙ୍କ ସାଙ୍ଗରେ ମୋର ଅମୁକଟାଏ କମ୍ ହେଲା ବୋଲି । ତା'ପରେ ଛାତ ଉପରେ ଦୀପ-ମାଳର ଅତଳା ଝାପ୍‌ସା ଆଲୁଅରେ, କୁମ୍ଭି ଫୁଲଝରିରେ ଆଖି ଜଳକା ହୋଇ ଯାଉଥିଲା ବେଳେ, ମୋ ଉପରେ କାହାରି ଦୃଷ୍ଟି ନଥିଲା ବେଳେ, ମୋ ଭାଗ ବାଣରୁ ଦି ଚାରିଟା ଲେଖାଏଁ ପୁଣି ତା କାଗଜ ଠୁଙ୍ଗାରେ ପୁରାଇ ଦିଏ । ମୋ ସାନ ଭାଇ କହେ 'ନନ୍ଦ୍ୟାଦିଣ, ମୁଁ ପାଞ୍ଚଟା ଚାଳ ଫୋଟକା ଫୁଟାଇ ସାରିଲିଣି, ଅନାରର ଦଶଟା ଅଛି ମୋ ଠୁଙ୍ଗାରେ, କୁଆଡ଼ୁ କେଜାଣି ।' କମ୍ପା ବଡ଼ ଭାଇନା ମାଗିଲେ ବଡ଼ ଅନିଚ୍ଛାରେ ଦେଲାପରି ଦିଇଟା ଚର୍ଖୀବାଣ ଦିଏ, କହେ—"କାଲି କିନ୍ତୁ ମୋତେ ଦିଇଟା ଫେରି ଦେବ ନଶ୍ଚେ ।" ତା'ପରେ ପ୍ରବଳ ଝୋ ଡା ଭିତରେ ଠାକୁର ଘରେ ଦୀପ ଚେକ ଦେବାର ଆଳରେ ବା ବାଥ୍‌ରୁମ୍ ଯାଉଛି ବୋଲି କହି ତଳକୁ ଚାଲିଯାଏ ତ ଆଉ ଫେରିବାର ନାଁ ଧରେ ନାହିଁ ସହଜରେ ।

ପର୍ବଟିଏ ପାଳିବାକୁ ମୁଁ କେଶ କମ୍ ପରିଶ୍ରମ କରେ ! ସୁଖ ଆନନ୍ଦର କଥାମାନଙ୍କୁ ସାକାର କରିବା ଲାଗି ପ୍ରାଣ ମୂର୍ଚ୍ଛିଦିଏ ।

ଏଥର ଦିଲ୍ଲୀରେ ପହଞ୍ଚିଲା ବେଳକୁ ମୋ ମନଟା କିନ୍ତୁ କେମିତି ଗୋଟାଏ ରକମର ଫାଙ୍କା ହୋଇ ଯାଇଥିଲା । ଆଗରେ ପର୍ବପର୍ବାଣୀ ଅଛି ବୋଲି ମୋର ମନରୁ ପାଶୋରି ହୋଇ ଯାଇଥିଲା । କେତେଜଣ

ପୁରୁଣା ସାଙ୍ଗଙ୍କୁ ଦେଖିଲି, କିଏ ବାହାହୋଇ ପକ୍କା ଘରସଂସାରୀ ତ କିଏ କଲେଜରେ ମୋଟା ଚଶମା ପିନ୍ଧି କ୍ଲାସ୍‌ରୁମ୍ ଆଉ ଲାଇବ୍ରେରୀରେ ଜୀବନ କଟାଇବାକୁ ସ୍ଥିର କରିଛି । ମନ ହେଲା, କିଛିଦିନ ଲାଗି ଯଦି ନିଜକୁ ଫେରାଇ ନେଇ ପାରନ୍ତି ଝିଅଦିନ-ଆନନ୍ଦହାଓ୍ୱାକୁ, ନିକଟରେ ଗୁଡ଼ିଆସିଥିବା ମୋର ଘରସଂସାର, ମୋ ଜୀବନର ସମସ୍ତ ଜଞ୍ଜାଳ ଆଉ ଦୁଃଖକୁ ଭୁଲିଯାଇ ପାରନ୍ତି କେତେଦିନ ଲାଗି । ଲାଇବ୍ରେରୀକୁ ଯାଇ ବହି ମେଳରେ ସମୟ ବିତାଇଲି ପୁଣି ଥରେ । ସେଇଠୁ ପୁଣି ସିନେମା ଥିଏଟର, କଳାଭବନରେ ସଙ୍ଗୀତ ଆସର, କିଛି ନ ହେଲେ ଟାଉନ୍ ବସ୍‌ରୁ ଓହ୍ଲାଇ ଘଣ୍ଟାଏ ଭିଡ଼ ଜମେ । ମୋ ଘର ସଂସାର କଥା ମନେ ପଡ଼ିଲେ ଭାବୁଥିଲି, ମିଛ କର୍ତ୍ତବ୍ୟ-ନିଷ୍ଠାର ସେ ଦୁଃଖ, ଆତ୍ମପୀଡ଼ଠାରୁ ଏ ଅର୍ଥହୀନ ଫୁଲଫାଙ୍କିଆ ଜୀବନ ଖରାପ କେଉଁଥିରେ ?

ଲାଇବ୍ରେରୀରୁ ସେଦିନ ପୁଣି ଥରେ ଧୀରେନ୍ ସହିତ ଫେରୁଥିଲି ଓ ସେ ନିଜ ଷ୍ଟପ୍ ଯାଏ ନ ଯାଇ ମୋ ଷ୍ଟପଠି ବସରୁ ଓହ୍ଲାଇ ପଡ଼ିଥିଲା । ଆମ ଘରକୁ ପହଞ୍ଚିବା ଆଗରୁ ରାସ୍ତାକଡ଼ ପାର୍କରେ ବସିଯାଉଥିଲୁ କିଛି ସମୟ । ପାଠ ପଢ଼ିଲାବେଳେ ଏଇ ଧୀରେନ୍ ସହିତ ଯୁକ୍ତିତର୍କ ହେଉଥିଲା, ବିଭିନ୍ନ ଆଇଡ଼ିଆ ଉପରେ ଭୁମୁଳ ଆଲୋଚନା ହେଉଥିଲା । ପରେ ଅକାଳେ ସକାଳେ ଦେଖା ହେଉଛି । ଆଲୋଚନା ଆଉ କୁହାଯିବା ଯାଏ କଥା ଯାଇନାହିଁ, କୁଟିଳ ସମ୍ଭାଷଣରେ ହିଁ ରହିଯାଉଛି ।

ସବୁଜ ଘାସ ଉପରେ ହାତରେ ଚନାଚୁର ପୁଡ଼ିଆ ନେଇ ସାମ୍ନାରେ ବହି କେତୋଟା ଖେଳାଇ ବସିଥିଲାବେଳେ ଗତ କେତେଦିନ ପରି ପୁଣି ମୁଁ ତା ସହିତ ଆଲୋଚନାରେ ଧନ୍ଦି ହେଇଗଲି । ସାମାଜିକ ଅନୁଷ୍ଠାନମାନଙ୍କ ଉପରେ କଥା ପଡ଼ିଥିଲା, ସେଇଠୁ ପର୍ବପର୍ବାଣୀ ଆଡ଼କୁ କଥା ଗଲା । କଥା ଲହରରେ ମୁଁ କହିଲି—"ପର୍ବପର୍ବାଣୀର ବାସ୍ତବ ଆନନ୍ଦ ସହିତ କିଛି ସମ୍ପର୍କ ନାହିଁ । ଅମୁକ ଦିନ ଅମୁକ ତାରିଖ ଅମୁକ ବାରରେ ଠିକ୍ ଏଇ ଏଇ କାମମାନ ମାପିଚୁପି କରାଯାଇ ଆନନ୍ଦିତ ହେବାକୁ ପଡ଼ିବ—। ହଁ, ପର୍ବର ମହତ୍ତ୍ୱ ସାମାଜିକ ଜୀବନରେ ଅଛି,

ମୁଁ ମନା କରୁନାହିଁ, ତେବେ ସେଥିରୁ ଖୋଜି ଆନନ୍ଦ, ଫୂର୍ତ୍ତି କରିବା ବୃଥା ।

ଧୀରେନ୍ ଭ୍ରୂ କୁଞ୍ଚାଇ ହାସ ଛୁଡ଼ି ଉଠିଲା । ସେ ଉତ୍ତର ପାଉନାହିଁ ଭାବି ମୁଁ ଆଉ ଟିକିଏ ତାକୁ ଚେତେଇବା ପାଇଁ କହିଲି—"ଏଇ ଧର ଆଜି ତମେ କହୁଥିଲ ଫାଓ୍ୱାଲି ପାଇଁ ସମସ୍ତଙ୍କର ଲୁଗା କିଣିବାକୁ ଅଛି, ଏଡ଼ଭାନ୍‌ସ ନ ନେଲେ ନ ଚଳେ—ଏତେ ସବୁ ଦାୟିତ୍ୱ ପୂରା କଲା ପରେ ଦିନଟି ଚାଲିଗଲେ କେତେ ଖୁସି ତମେ ସତରେ ହୋଇ ପାରିବ ?

ଧୀରେନ୍ ଆଖି ଉଠେଇ ମୋତେ ଚାହିଁଲା, ହାତର ହାସ ତାର ସ୍ଥିର ରହି ଯାଇଥିଲା । ଅଳ୍ପ ହସି କହିଲା—"ଥରେ ଦୀପାବଳି ଦିନ ଆମେ ସୁମିତା ଘରେ ଥିଲେ, ମନେ ଅଛି ? ମୁଁ ଦେଖିଚି ତମର ଦୀପାବଳି କେମିତି ।"

ଆଲୋଚନା ବ୍ୟକ୍ତିଗତ ସ୍ତରକୁ ଆସୁ ବୋଲି ମୋର ଇଚ୍ଛା ନ ଥିଲା । ଝଡ଼ପୃଷ୍ଠିକୁ ହଠାତ ବାହାରକୁ ଫିଙ୍ଗିଦେବା ପାଇଁ ମୁଁ କଥା ଖୋଜି ଖୋଜୁ ଧୀରେନ୍ କହିଲା—"ଦୀପାବଳି ଖାଲି ସାମାଜିକ ବା ଧାର୍ମିକ ଉତ୍ସବ, ପାରମ୍ପରିକ ଖିଆପିଆ ପାଳିବାର ହିଁ ପର୍ବଟିଏ ନୁହେଁ ଜାଣ । ତମ ପରି ଆଉ କିଏ ବାଣ ଫୁଟେଇଲେ କାନରେ ହାତ ଦେଇ ଅଗତ୍ୟା ଶୁଣିବା, ଅନ୍ୟ କାହା ହାତରୁ ଜଳନ୍ତା ଫୁଲଝରିଟିଏ ନେଇ ଶେଷ ହେବା ପୂର୍ବରୁ ଶୂନଆଁରେ ଫିଙ୍ଗିଦେବା ଦୀପାବଳିର ଆନନ୍ଦ ନୁହେଁ । ନିଜେ ବାଣ ଫୁଟେଇବା ମୁଁ ଏଥର ତମକୁ ଶିଖେଇଦେବି, ଜଳନ୍ତା ଚର୍କୀକୁ ସରୁ ତାରରେ ଘୂରେଇ, ନିଜ ଚାରି ପାଖରେ ରଙ୍ଗବେରଙ୍ଗ ନିଆଁ ଫୁଲର ବୃତ୍ତ ତିଆରି କରିବା ଶିଖେଇଦେବି । ଦୀପାଓ୍ୱାଳି, ଦିନକର ସ୍ୱଚ୍ଛନ୍ଦ ଉଦ୍ଦାମତାର ପର୍ବ, ଜଳେଇ ଫୁଲେଇ ଫୁଟେଇ ଖେଳେଇ ଦେଇହୁଏ ନିଜକୁ କେଇକ୍ଷଣ ଲାଗି ସେଦିନ ।"

ସେଇ ଦୀପାଓ୍ୱାଳିର ପ୍ରତୀକ୍ଷାରେ ମୁହୂର୍ତ୍ତ ଗଣୁଥିଲାବେଳେ ଆସିଲା ଟେଲିଗ୍ରାମଟି । ଏତେବେଳେ କି ଦରକାର ଥିଲା ତାର ? ଆଉ ଦିନ କେତେଟା ପରେ ଆସିପାରି ନ ଥାନ୍ତା ? ପରବର୍ତ୍ତୀ ଦିନ କେତୋଟି କେଉଁପରି ରୂପ ନେଇଥାନ୍ତା ତା ହୋଇଥିଲେ ?

ତେବେ ଟେଲିଗ୍ରାମ୍ ପାଇଲା ପରଠୁ ମୋ ମନର ଦୋଷୀଭାବ ମୋତେ ଅଥୟ କରି ଦେଇଥିଲା । ଫେରିଲା ବେଳେ ମୁଁ ମନୋଜ ବ୍ୟତୀତ, ତାଙ୍କର ମଙ୍ଗଳ ବ୍ୟତୀତ, ଆଉ କିଛି ଭାବିନାହିଁ ।

ଫେରି ଯେତେବେଳେ ଦେଖିଲି କିଛି ଖାସ୍ କାରଣ ନଥିଲା ତାଙ୍କ ଟେଲିଗ୍ରାମ୍‌ର, ଗୁଡ଼ ଆସିଥିବା ପାପାବଳି ଲାଗି ମୋ ମନରେ କ୍ଷୋଭ ଆସିଲା ସତ, କିନ୍ତୁ ସ୍ୱୀତ ଭିତରର ଗର୍ବର ଅନୁଭବଟିକୁ ମୁଁ ଅସ୍ୱୀକାର କରି ପାରିନାହିଁ । ବିଜୟୀର ଭାବଟିଏ ଆସିଥିଲା । ଯାହେଉ ଶେଷରେ ମୋତେ ହିଁ ଲୋଡ଼ିଲେ ତ ! ମୋ ସହିତ ହିଁ ସମ୍ପର୍କକୁ ବେଶୀ ମୂଲ୍ୟ ଦେଲେ, ମୋତେ ହରାଇ ଦେବାର ଭୟରେ ଆଉ କିଛି ନ ବିଚାରି ଟେଲିଗ୍ରାମ୍ କରି ଡକାଇ ଆଣିଲେ ।

ଆଉ ଆଜି ସନ୍ଧ୍ୟାରେ, କେତେ ଗର୍ବରେ ମୋ ଆଗରେ ଆଣି ଦେଖାଇଦେଲେ ସେ ମୋତେ ଡକାଇ ଥିବାର ଅସଲ କାରଣ । ରୁମାର ବିବାହର ନିମନ୍ତ୍ରଣ କାର୍ଡ଼ ।

ମୋ ସହିତ ସମ୍ପର୍କ ଭାଙ୍ଗି ଯିବାର ଭୟରେ ଆର୍ତ୍ତ ହୋଇ ନୁହେଁ, ରୁମାର ନିଶ୍ଚିତ ବିଚ୍ଛେଦ ଅସହ୍ୟ ହେଲାବୋଲି, ଏକୁଟିଆ ପଣ ବଳେଇ ଗଲା ବୋଲି ମୋତେ ଡକାଯାଇଛି ।

ରାତି । ସବୁ ଘରୁ ପ୍ରାୟ ପାପମାନ ଲିଭିଗଲାଣି । ଗୋଟାଏ ଗୋଟାଏ ବାଣ ଶୁଭୁଛି ତଥାପି ଦୂରରୁ କେଉଁଠୁ । ଅନ୍ଧାରରେ ଉଡ଼ୁଥିବା ଝରକା ପର୍ଦ୍ଦାକୁ ଅକାରଣ ଅନେଇ ରହି ମନୋଜ ଶୋଇଥିଲା ଯୋଡ଼ି ଖଟରେ, ବିନୁଠାରୁ ଟିକିଏ ଦୂର୍ ।

ବିନୁ ନିଶ୍ଚୟ ଜାଣିଥିଲା ଯେ ମୋତେ ଆଉ ରୁମାକୁ ନେଇ ଯେତିକି ଗୁଜବ ଉଠିଥିଲା, ତାର ବେଶୀଭାଗ ଅତିରଞ୍ଜନ । ରୁମା ବୋଧ୍ ସହିତ ମୁଁ ଆଗେଇ ପାରିଥାଆନ୍ତି । ପାରିନାହିଁ । ରୁମା ଲାଗି ମୋର ଆକର୍ଷଣର ପଛରେ ଠିକ୍ କେଉଁ କାରଣ ଥିଲା କହିପାରିବି ନାହିଁ । ବିନୁର ଆକ୍ଷେପ ଅନୁଯାୟୀ ତାଠାରୁ ମୋର ଆଗ୍ରହ ମରିଯାଇଥିବା

କଥା ବି ସମ୍ପୂର୍ଣ୍ଣ ସତ ନୁହେଁ । ରୁମା ପାଖରେ ଥିଲାବେଳେ ନୂଆ ରୋମାଞ୍ଚର ମୋହ ମୋତେ ବେଳେବେଳେ ଅଥୟ କରୁଥିଲା ହୁଏତ, ହେଲେ ମୁଁ ସର୍ତ୍ତ ଭାଙ୍ଗି ନାହିଁ । ସମ୍ପର୍କର ସର୍ତ୍ତ ବିନୁ ସହିତ । ବିନୁ ଏକଥା ଜାଣେ, ସେ ମୋତେ ଦୋଷୀ କରିପାରିବ ନାହିଁ ।

ରୁମା କଥା ଶୁଣିଲେ ସେତେବେ ବିନୁର ଆଖି ଜଳିଉଠେ, ତାକୁ ରାସ୍ତା ଘାଟରେ ଦେଖିଲେ ବିନୁ ମୁହଁରୁ ସବୁରଙ୍ଗ ଲିଭିଯାଏ । 'ମୁଁ ନଥିଲା-ବେଳେ ଘରେ ଖୁବ୍ ଡେକ୍‌ରେସନ୍ ଦେଉଥିବ' କହିଲା ବେଳେ ତା ନାକପୁଡ଼ା ଥରି ଉଠେ । ବାସ୍ତବରେ ରୁମା ଆମ ଜୀବନ ପରିଧିକୁ ଆସିବା ପରେ ପରେ ହିଁ ତ ବିନୁ ମଝି ମଝିରେ ଅକାରଣ ଦିଲ୍ଲୀକୁ ଯିବା ପ୍ରାୟ ଛାଡ଼ି ଦେଇଥିଲା । ସେଥିପାଇଁ ଏଥର ଯେତେବେଳେ ସେ ଝଡ଼ପରି ଚାଲିଗଲା, ଆଉ ମାସେଧରି ଆସିବାର ନାଁ ପକେଇଲା ନାହିଁ, ମୁଁ ଡରିଯାଇଥିଲି ।

ଆଜି ରାଗରେ ରୁମାର ବାହାଘର କାର୍ଡ଼ ଖୋଲୁଥିବା ବେଳେ ମୁଁ ଅନୁମାନ କରୁଥିଲି, ବିନୁର କି ପ୍ରତିକ୍ରିୟା ହେବ ରୁମାର ପ୍ରେମବିବାହ ବିଷୟରେ ଜାଣିପାରିଲେ । ଆଶ୍ଚର୍ଯ୍ୟରେ, ଆଉ ମୋତେ ଏତେ କଟୁ ଆକ୍ଷେପ କରିଥିବା ଯୋଗୁଁ ଲଜ୍ଜିତ ହେବ, ତଥାପି ଏ ହଠାତ୍ ଆଶ୍ୱାସନାରେ ନିଶ୍ଚୟ ତା ମୁହଁରେ ନିଶ୍ଚିନ୍ତ ହସ ଫିଟିଉଠିବ ।

କିଛି ହେଲା ନାହିଁ । ପ୍ରଥମେ ତା ମୁହଁକୁ ଆଶ୍ଚର୍ଯ୍ୟର ଭାବ ଆସିଲା । ତା'ପରେ ଆଉ କିଛି ଭାବ ଦିଶିଲା ନାହିଁ । ତା ହାତରୁ କାର୍ଡ଼ଟି ଖସି ପଡ଼ିଲା ତଳେ । ପଦଟିଏ କିଛି ନ କହି ସେ ଭିତରକୁ ଚାଲିଗଲା ।

ଭାବିଥିଲି କିଛି ସମୟ ପରେ ସେ ଲୁଗା ବଦଳେଇ ଆସିବ । ଚାପ ଜାଳିବ । ହେଲେ ତା ପରିଠୁଁ ସିଏ ମୁହଁ ଫୁଲେଇ ରହିଛି । ମୋଠୁ ହାତେ ଛାଡ଼ି ସେପାଖକୁ ମୁହଁ ବୁଲେଇ ଶୋଇଛି । ତା ଦେହରେ ହାତ ଦେଲିରୁ କହିଲା, ମୁଣ୍ଡ ବିନ୍ଧୁଛି ।

ସେ ହୁଏତ ବୁଝି ପାରୁଛି, ତୁମାର ବାହାଘର କାର୍ଡ ପାଇବା ପରେ ପରେ ହିଁ ମୁଁ ତାକୁ ଟେଲିଗ୍ରାମ୍ କରି ଡାକିବାର ଆବଶ୍ୟକତା ଅନୁଭବ କରୁଛି ।

ତଥାପି, ତାଁର କଣ ଏଥିରେ ଆଶ୍ୱସ୍ତ ହେବାର କଥା ନାହିଁ ? ସମସ୍ୟାଟି ଦୂରେଇ ଗଲା ତ ଆମ ଦୁହିଁଙ୍କ ଯୁଗ୍ମ ଜୀବନରୁ ।

ନା ସେ ଆଶ୍ୱସ୍ତ ହେବାକୁ ଚାହୁଁ ନଥିଲା ? କାହିଁକି ?

କେଉଁ ପାପାବଳି ପାଇଁ ତାର ଏତେ ଦୁଃଖ ? ବନ୍ଧୁର ପାପାବଳି ପାଳିବା ମୁଁ କଣ ଜାଣିନାହିଁ । ଗତ କେତେ ବର୍ଷ ହେଲା ଦେଖି ଆସିଛି, ପାଳି ଆସିଛି ତା ସହିତ, ତାଆରି ଇଚ୍ଛା ମତେ । ପ୍ରତିଟି ପାଦରେ ଆମର ସେଠି ଏମିତି ହୁଏ, ଏ କଥାଟି ଏମିତି ନୁହେଁ ସେମିତି ହେବା ଉଚିତ୍ । ଏ ଉଚିତ୍‌ରେ ଏତେ ସ୍ଫୂର୍ତ୍ତି ଆସିଲା କାହୁଁ ?

ସେ କଣ ମୋଠୁ ଦୂରରେ ପାଓ୍ୱାଲି ପାଳିବାକୁ ଚାହୁଁଥିଲା ସ୍ୱଚ୍ଛନ୍ଦରେ ? ବିନା ବାଧବାଧକତାରେ ? ସେଇଥିପାଇଁ ସେ ମୋ ଟେଲିଗ୍ରାମ୍‌ରେ ସୁଖୀ ନୁହେଁ, ଘରକୁ ଫେରିବାରେ ନୁହେଁ । ତୁମାର ସମ୍ବନ୍ଧ ଲାଗି ଦୂରେଇ ଯିବାରେ ବି ନୁହେଁ ।

ବନ୍ଧୁ କଣ ଚାହୁଁଥିଲା ସର୍ତ୍ତ ମୋ ଓରି ତରଫରୁ ଭଙ୍ଗ ଯାଉ ?



# ମେକ୍‌ଅପ୍

ଶ୍ରୀମତୀ ଦାସ୍‌ଙ୍କର ଦାମୀ ସିଲ୍‌କ୍ ଶାଢ଼ୀର ଜରି ଧଡ଼ି କାର୍ପେଟ୍ ଉପରେ ଲୋଟୁଥିଲା, ତାଙ୍କ ବାଁ ଜଙ୍ଘ ଉପରେ ଭରାଦେଇ ସୁନ୍ଦର ଭାବେ ରହିଥିଲା ଡାହାଣ ଗୋଡ଼ଟି, ହାଇହିଲ୍ ଜୋତାର ଗୋଜଆ ମୁନ ଆଉ ପାଦର ନାଲି ଚକ୍ ଚକ୍ ନଖ ସମେତ ସାମ୍ନା ଜୋତାର ଅଂଶଟି ଶାଢ଼ୀର ଜରିଧଡ଼ି ତଳୁ ଦିଶୁଥିଲା···ଓଢ଼ଣା ତଳୁ ସୁନ୍ଦର ବୋହୂର ମୁହଁଟିଏ ପରି ।

ମୁହଁରେ ଆବଶ୍ୟକମତେ ସୁନ୍ଦର ଛପା ହୁଏ, କାରଣେ-ଅକାରଣରେ ଯାହା କମ୍ ବେଶୀ ହୁଏ । ଶ୍ରୀଯୁକ୍ତ ମେହ୍‌ରା ମଜାକଥାଟିଏ କହିଲେ (ପ୍ରଥମ ଧାଡ଼ିରୁ ଯେଉଁ ଜୋକ୍‌ଟିକୁ ଶ୍ରୀମତୀ ଦାସ ଚିହ୍ନି ପାରିଲେ) —କଥାଟି ଆରମ୍ଭ କରିବା ଠାରୁ ଶେଷ କରିବା ଯାଏଁ ସେ ଅଯଥା ଅଧିକ ସମୟ ନେଲେ, ତଥାପି ଉତ୍ସୁକ ଭାବ ମୁହଁରେ ଫୁଟାଇ ତାଙ୍କ କଥାତକ ଶୁଣିବାକୁ ହେଲା ଓ ଆଶାନୁରୂପ କ୍ଲାଇମାକ୍ସଟି ଆସିଲାକ୍ଷଣି ସମସ୍ତଙ୍କ ସହିତ ଉଚ୍ଛ୍ୱସିତ ଭାବେ ହସିବାକୁ ହେଲା । ସହରରେ ନୂଆ ଖୋଲିଥିବା ବିଉଟି ପାର୍ଲର୍‌ର ବିଉଟିସିଆନ୍ କହିଥିବା ମୁତାବକ ଶ୍ରୀମତୀ ଦାସ୍ ହସିବାକୁ ପ୍ରାକ୍‌ଟିସ୍ କରିଛନ୍ତି, ଗାଲରେ ତାଙ୍କର ଦୁର୍ଲ୍ଲଭ ଡିମ୍ପଲ୍‌ଟି ପଡ଼ିବ ଅଥଚ ଅନ୍ତଗୁଡ଼ାଏ କଳଦାନ୍ତ ଦିଶିବ ନାହିଁ । ବିଉଟିସିଆନ୍ ଶ୍ରୀମତୀ କୋହ୍ଲି ଆହୁରି ବି କହିଛନ୍ତି, ଆପଣ ଯେତେ ଉଚ୍ଛ୍ୱସିତ ହୋଇ ହସିଲେ ବି ଆଖି ଯେମିତି ପ୍ରାୟପୂରା ବୁଜି ହୋଇଯିବ ନାହିଁ ଲକ୍ଷ୍ୟ ରଖିବେ, ବରଞ୍ଚ ମୁଡ୍‌ରେ ଯେମିତି ବେଶୀ ଭ୍ରୂ କପାଳ କୁଞ୍ଚେଇବେ ନାହିଁ—ଦର୍ପଣ ଆଗରେ

ନିୟମିତ ପ୍ରାକ୍‌ଟିସ୍ କଲେ ଏସବୁ ସୁଧୁରିଯିବ । ହେଲେ ବଦଭ୍ୟାସଟାକୁ ଏଯାଏଁ ପୁରା ଆୟତ୍ତ କରିପାରି ନାହାନ୍ତି ଶୋଭା ଦାସ । ଅପ୍ରତ୍ୟାଶିତ ହସକଥାଟାଏ ଆସିଗଲେ ସେ ଆଖି କଟିମିଟି ବୁଜିଦେଇ ତଳକୁ ନଇଁପଡ଼ି ହସିପକାନ୍ତି ଏବେ ବି ।

ଆଜି ମେହ୍‌ରାଙ୍କ ଘରେ ପାର୍ଟି, ତାଙ୍କ ହବାହ-ବାର୍ଷିକୀ । ବାହାଘର ଷୋହଳ ବର୍ଷ ପୂରିଲା । ସନ୍ଧ୍ୟାବେଳୁ ମେହ୍‌ରା ଆଜି ପତ୍ନୀଙ୍କୁ 'ମାଇ ସୁଇଟ୍ ସିକ୍‌ଷ୍ଟିନ୍' ବୋଲି ସମ୍ବୋଧନ କରୁଥିଲେ ଥଟ୍ଟାଳିଆ ଗେହ୍ଲାରେ । ଛାତରୁ ଫ୍ୟାନ୍‌ରୁ ବେଲୁନ୍ ଗୋଛା ଝୁଲୁଥିଲା ଓ ହାତରେ ସମସ୍ତଙ୍କର ସୁଶୋଭନ ଗ୍ଲାସ ଥିଲା । ଏ ମଧ୍ୟମ ଧରଣର ଶିଳ୍ପସହରଟିରେ ଏମିତି ବନ୍ଧୁମିଳନଟିଏ ସବୁଦିନେ ଜୁଟେନାହିଁ । ଜମିଥିବା ଦଶ ବାର ଯୋଡ଼ିଙ୍କ ପାଇଁ ଆଜି ଆନନ୍ଦ ଉତ୍ସବର ସନ୍ଧ୍ୟାଟିଏ ।

ଏ ସହରରେ ଭଲ ସିନେମା ହଲ୍‌ଟିଏ ବି ନାହିଁ, ତିନଟା ହଲ୍‌ରୁ ଗୋଟିଏହେଲେ ଏଆର୍ କୁଲ୍‌ଡ ସୁଦ୍ଧା ନୁହେଁ । ମୋତିଲାଲ୍ କଂଟ୍ରାକ୍ଟରର ଏ-କ୍ଲାସ ହଲ୍‌ଟାଏ ତିଆରି ହେବ ବୋଲି ଶୁଣାଯାଉଚି ଗତ ଦ'ବର୍ଷ ହେଲା, ହେଲେ ସେ ଦିନ ଗଡ଼ୁଉଚି । ଏଠାକାର ପବ୍ଲିକ୍‌କୁ ଦେଖି ଯିଏ ବା କିଣ ସାହସ କରିବ । ବାଲ୍‌କୋନିରେ ଲୋକେ ଗୋଡ଼ ଟେକି ସିଟ୍ ଉପରେ ବସି ପାନ ପିକ ପକାନ୍ତି । ଛୁଆଙ୍କୁ ସେଇଠି ଠିଆ କରି ମୁତାନ୍ତି । ତଥାପି ଆଉ ଅନେକଙ୍କ ପରି ଦାସ୍ ଦମ୍ପତି ଚିତ୍ତବିନୋଦନର ଅନ୍ୟ ଉପାୟ ନ ପାଇ ସିନେମାଟିଏ ବଦଳିବାକୁ ଅନେଇଥାନ୍ତି ଓ ନିହାତି ଅପରିଚିତ ଷ୍ଟାର୍ ନ ଥିଲେ ନିଶ୍ଚୟ ଯାଆନ୍ତି । ସିନେମା ପର୍ଦ୍ଦାରେ ନାୟକ ନାୟିକାଙ୍କ ଜାକଜମକ ଘର, ବିଛଣା, ଚକ୍‌ମକ୍ ଲମ୍ବାକାର୍‌ରେ ବାଳ ଉଡେଇ ଗୀତ ଗାଇବା, ଝଲ୍‌ମଲ ହୋଟେଲରେ ହାତଗୋଡ଼ ଗୁଡି ଡ଼ିସ୍କୋ ନାଚିବା ଇତ୍ୟାଦି ଦେଖି ବିନୋଦିତ ହୁଅନ୍ତି । ପାଖ ସିଟ୍‌ରେ ଗୋଡ଼ ଟେକି ବସିଥିବା ଲୋକଙ୍କ ବିଡ଼ିଧୂଆଁ ନାକରେ ବାଜେ ନାହିଁ ।

ମିଷ୍ଟର୍ ଦାସ ବ୍ୟସ୍ତ ଲୋକ । କେବେ କେମିତି ତାଙ୍କୁ ଖଣି ଅଫିସରେ ରାତି ଦଶଟାଯାଏଁ ବି ରହିବାକୁ ହୁଏ । ରାତିସାରା ବି ରହିବାକୁ ପଡ଼ିଚି କଦବା କେବେ ଲେବର ଷ୍ଟ୍ରାଇକ୍ ବେଳେ । ସନ୍ଧ୍ୟା-

ବେଳେ ମଝି ମଝିରେ କାହା ଘରେ ଚାସ୍ ଆସର ଜମେ, ସପ୍ତାହରେ ଘନଟିଏ ଲେଡ଼ିଜ୍ କ୍ଲବରେ କଟିଯାଏ ଶ୍ରୀମତୀ ଦାସ୍ଙ୍କ ଅପରାହ୍ଣ । ଏସବୁ ବ୍ୟକ୍ତିତ ସାଧାରଣ ସନ୍ଧ୍ୟା ଟିଏ ତାଙ୍କର ନିହାତି ସାଧାରଣ ଭାବେ କଟେ ।

ଧରାଯାଉ କାଲି ସନ୍ଧ୍ୟା । ପୁଅ ଝିଅ ଦୁହେଁ ଆୟା ସାଙ୍ଗରେ ପାର୍କକୁ ଯାଇଛନ୍ତି ଖେଳିବାକୁ , ଫେରିନାହାନ୍ତି । ମିଷ୍ଟର୍ ଦାସ୍ ଫେରିଲେ ଅଫିସରୁ । ଶ୍ରୀମତୀ ଦାସ୍ ଅନ୍ଧାର ହୋଇଆସିଥିବା ଅଗଣାରେ ଆରାମ ଚଉକିଟିଏ ପକାଇ ବସିଥାନ୍ତି । ଟେବୁଲ ଉପରେ ମୁହଁମାଡ଼ି ପଡ଼ିଥାଏ ଖୋଲା ଉପନ୍ୟାସଟିଏ, ଅନେଇଥାନ୍ତି ସାମ୍ନା ଆମ୍ବଗଛର ଅନ୍ଧାର ଭିତରୁ ଆସୁଥିବା ବଗୁଲିଆଙ୍କର ଘରଚଟିଆ ବଣିଙ୍କ କୋଳାହଳ ଆଡ଼କୁ । ଦାସ୍ ଆସିଲେ, ସ୍ତ୍ରୀଙ୍କୁ ଦେଖିଲେ, ତାଙ୍କ ଦୃଷ୍ଟି ଯାଇଥିବା ଦିଗକୁ ଥରେ ଅନେଇଲେ । ହେଲେ ପଛ ଗହଳରେ ନିବୁଜ ଅନ୍ଧାର ବ୍ୟତୀତ ଆଉ କିଛି ଠଉର କରିପାରିଲେ ନାହିଁ । ପାଖ ଚଉକି ଆଡ଼କୁ ଯାଉଯାଉ କହିଲେ—"କଣ ବସିଚ ବାହାରେ ?" (ଅର୍ଥାତ୍—'ମୁଁ ଆସିଲି ।')

ଶ୍ରୀମତୀ ଦାସ ଦୃଷ୍ଟି ଫେରେଇଲେ, ଅଳ୍ପ ହସି କହିଲେ—"କଣ ଏତେ ଡେରି ହେଲା ଆଜି ?" (ସବୁଦିନେ ଏତିକି ଡେରି ହୁଏ, ସ୍ୱାଠୁ ବ ବେଶୀ । ସମ୍ଭାଷଣର ଅର୍ଥ -- 'ମୁଁ ତମର ପ୍ରତୀକ୍ଷା କରୁଥିଲି ।')

ତାପରେ ଅଗଣାର ଲାଇଟ୍ ଟିପାହୁଏ ଓ ଖବର କାଗଜ ଗୃ ଆସେ । ସାନ ଚଉତା ଖବରକାଗଜଟି ଖଡ଼୍ ଖାଡ଼୍ ଶବ୍ଦରେ କାୟା ବିସ୍ତାର କରି ଦାସଙ୍କୁ ସଂପୂର୍ଣ୍ଣ ଗିଳି ପକାଏ । ଶ୍ରୀମତୀ ଦାସ୍ କହନ୍ତି— "ବାରିପାଖ କଦଳୀ କାନ୍ଧରେ ସାତୋଟି ଫେଣା ହେଲାଣି, ଦେଖିଲଣି ?"

ଖବର କାଗଜ ସେପାଖୁ ଶୁଭେ—"ଆଚ୍ଛା ?"

—"ବାଇଗଣ ଗଛଗୁଡ଼ାକରେ ପୋକ ଲାଗିଲେଣି । ସେ ରେଡ଼୍ଡ଼ିକ୍ କହିଥିଲି ଔଷଧ ପକେଇବା ପାଇଁ, ଏଯାଏଁ କାହିଁ ପକେଇଲାନିତ !"

—"ଆରେ !"

—"ମୁଁ ଖାଲି କହିରଖୁଛି । ତମେ କିଛି ଶୁଣୁନା ।"

—'ଶୁଣୁଛି ପରା । ବାଇଗଣ ଗଛରେ ପୋକ ଲାଗିଲାଣି, ରେଡ଼୍‌ଡ଼—"

ଶ୍ରୀମତୀ ଦାସ୍ ହସିଲେ ସ୍ୱାମୀଙ୍କ ରସିକତାକୁ ଉପଭୋଗ କରୁଛନ୍ତି ବୋଲି ।

—"ଜାଣ, ଆଜି ମିସେସ୍ ଗୁପ୍ତା କହୁଥିଲା···"

ଖବରକାଗଜ ଖଡ୍‌ଖାଡ୍ ଶବ୍ଦ କରି ପୃଷ୍ଠା ଲେଉଟାଏ । ଶ୍ରୀମତୀ ଦାସ୍ ଉଠି ରୋଷେଇ ଘରକୁ ଯାଆନ୍ତି, ତରକାରୀ ପଚ କଣ ଛଆଣ୍ଟି ହେବ ଧନାକୁ କହନ୍ତି, ଶୋଇବା ଘରକୁ ଯାଇ ପିଲାଙ୍କ କଥା ବୁଝନ୍ତି । ପୁଣି ଫେରିଆସନ୍ତି ଆପଣା ଚଉକିକୁ ।

—"ବୁଝିଲନା, ମିସେସ୍ ଗୁପ୍ତା ଯେତିକି ସରଳ ବୋଲି ଜଣାଯାଏ, ଜମାରୁ ତାହା ନୁହେଁ···"

ସକାଳୁ ଟିକିଏ ଗପସପ କରିପାଇନାହିଁ କାହା ସହିତ, ମିସେସ୍ ଗୁପ୍ତ ସହିତ ଫୋନ୍‌ରେ ଯେତିକି କଥାବାର୍ତ୍ତା ହେଲା, ତାକୁ କଣ ଗପସପ ବୋଲି କହିବ ? ଦାସ୍ ତାଙ୍କୁ ଏବେ ଗପୁଡ଼ି ଭାବିଲେ ଭାବନ୍ତୁ, ତାଙ୍କ କଥାକୁ ଖବରକାଗଜରେ ଆଡ଼େଇଦେଲେ ଦିଅନ୍ତୁ, ଶ୍ରୀମତୀ ଦାସ୍ ଆହୁରି କହିଲେ—"ଭଦ୍ର ସ୍ତ୍ରୀ ଲୋକ କିଏ ନିଜର ନୂଆ ଶାଢ଼ୀର ଦାମ୍ କହି ବୁଲେଇ ବାଙ୍କେଇ ସମସ୍ତଙ୍କ ଆଗରେ ? ଆମେ କଣ ଶାଢ଼ୀ ପିନ୍ଧି ନାହୁଁ ଯେ ତୋ ଶାଢ଼ୀର ଦାମ୍ ଆମକୁ ଅଜଣା ?"

ହଠାତ୍ ଖବରକାଗଜ ଚଉତା ହୋଇ ସାନ ହୁଏ, ଷ୍ଟୁଲ୍‌ରେ ରଖାଯାଏ । —"ଶୁଣ, ସାଢ଼େ ସାତଟା ହେଲାଣି । ବାହାରିଲ, ଟିକିଏ ବୁଲିଆସିବା ।"

ଶ୍ରୀମନ୍ତ ଦାସ ଭିତରକୁ ଯାଇ ସନ୍ଧ୍ୟାବେଳର ପ୍ରସାଧନ ଆଉ ଟିକିଏ ପରଖି ନଅନ୍ତି, ଶାଢ଼ୀର କୁଞ୍ଚ ସଜାଡ଼ି ନଅନ୍ତି, ଡ୍ରେସିଂ ଟେବୁଲ ଡ୍ରୟାର୍‌ର ବାଉରଟି ଲିପଷ୍ଟିକ୍‌ରୁ ବାଛି ଓଠରେ ଲଗାନ୍ତି ।

ରାସ୍ତାର ଥଣ୍ଡା ପବନରେ ସାନ୍ଧ୍ୟ ଭ୍ରମଣ । ଦାସ୍ କହନ୍ତି—"ବୁଝିଲ ଜୈନ୍ ସାହାବ୍ ଯେତେ କାମିକା ମ୍ୟାନେଜର ହୁଅନ୍ତୁ ପଛେ, ଭଲ ଏଡ୍‌ମିନଷ୍ଟ୍ରେସନ୍ ଜଣା ନାହିଁ ତାଙ୍କୁ ।"

—"ସତେ ?"

—"ଆଉ କଣ ? ଲେବରର୍‌ଙ୍କ ଦାଇଟା ଡିମାଣ୍ଡ ତ ସେଥର ମାନିନେବା କ ଦରକାର ଥିଲା ? ଯଦି ବା ମାନିଲ ଷ୍ଟ୍ରାଇକ୍ ବନ୍ଦ କରିବା ଲାଗି, ଗୁଲକ ଲୋକ ହୋଇଥିଲେ କେବେହେଲେ ନମ୍ବର ଫୋର୍ ଡିମାଣ୍ଡ୍‌ଟା ମାନିଥାନ୍ତା ? ସେଇଥିରୁ ଏବେ ଝମେଲା ବଢ଼ିଲ ନା ନାଇଁ ?"

—"ଓଃ !"

—"ତାଙ୍କ ପଛରେ ଯେଉଁ ଗୁମସ୍ତା ଦଳଟା ଲାଗିଛନ୍ତି ସେଇମାନେ ନଗ୍ନଉଛନ୍ତି ତାଙ୍କୁ । ଆଚ୍ଛା ସବୁଦିନ ଗୋଟାଏ ସେମାନଙ୍କ ସଙ୍ଗରେ ବସି ତାସ୍ ଖେଳିବା, ପିଇବା ଶୋଭା ଦେଉଛି ତାଙ୍କୁ ? ସବ୍‌ଡ଼ିନେଟ୍‌ଙ୍କ ଆଗରେ ନିଜ ଇମେଜ୍ ରଖୁଛନ୍ତି ସେ ?"

—"ସତ କଥା ।"

ଶ୍ରୀମନ୍ତ ଦାସ୍ ମନେ ପକାଇଲେ ଗତ ଦୁଇମାସ ହେଲା ଜୈନ୍ ସାହାବାଙ୍କ ଘରୁ ଦାସ୍‌ଙ୍କୁ ଡାକରା ଆସିନାହିଁ ତାସ୍ ଖେଳିବାକୁ ।

ରାସ୍ତାରେ କାଁ ଭାଁ ଲୋକ । କଲୋନୀର ସବୁଜ ହେଜ୍ ବନ୍ଧେଇ ରାସ୍ତା ଟପିଲା ପରେ ଦୁଇ ଫର୍ଲଙ୍ଗ ଚାଲି ପରେଶଙ୍କ ପୋଖରୀ ପାଖରୁ ପୁଣି ଲେଉଟି ଆସୁଥିଲେ ଦୁହେଁ । ଶ୍ରୀମନ୍ତ ଦାସ ହାତଘଡ଼ି ଦେଖି କହିଲେ—

"ମାତ୍ର ଆଠଟା ବାଜିଛି । କେତେ ଶୀଘ୍ର କେତେଗୁଡ଼ାଏ ବାଟ ଚାଲିଗଲେ ମ ଆମେ । ରଏଲ ବ୍ରିସ୍କ୍ ଓ୍ୱାକ୍ ।"

—"ଦେଖିଲଣି, ମିସେସ୍ ଗୁପ୍ତା ତାଙ୍କ ବାରଣ୍ଡାରେ ବସିଛନ୍ତି ଏକୁଟିଆ । ତମେ ଯାଅ ତାଙ୍କ ସଙ୍ଗେ ଗପ କର । ମୁଁ ଟିକେ ଆସେ କ୍ଲବ୍‌ରୁ ।"

ଗହଳ ହେଜ୍ ଧାଡ଼ିରେ ପ୍ରତି ଗେଟ୍ ପାଖରେ କେବଳ ଦି ଫୁଟର ପାହୁଣ୍ଡର ଫାଙ୍କ, ସେତିକିରେ ଦୁହିଁ ବାଟରେ ପଡ଼ୁଥିବା ପ୍ରତି ଘର ହତା ଭିତରକୁ ଥରେ ଝାଙ୍କି ନଅନ୍ତି । ଶ୍ରୀମତୀ ଦାସ୍ ମୁହଁ ଫେରାଇ ସମାନ ଗତିରେ ଚାଲୁ ଚାଲୁ କହିଲେ,—"ପୁଣି ତମେ କ୍ଲବ୍‌କୁ ଯାଇ ରମି ଖେଳିବ, ପଇସା ହାରିବ ?"

—"କ'ଣ ଆଉ କରିବାକୁ ଅଛି ଏଠି କହିଲ ଶୋଭା ? ଦିନ ସାରା ଏତେ ଖଟଣି, ମୁଣ୍ଡଟା ବିନ୍ଧୁଛି । ଟିକିଏ ଖେଳି ନ ଆସିଲେ ରାତିରେ ନିଦ ହେବନି ।"

—"ତାହେଲେ ମୁଁ ଯାଏ ଘରକୁ । ମିସେସ୍ ଗୁପ୍ତା ଘରକୁ ତିନିଥର ଗଲିଣି, ସେ ଥରେ ହେଲେ ଆସିନି ।"

ନିଜ ଘର ଗେଟ୍ ଆସି ଯାଇଥିଲା । ଦାସ୍ ରାସ୍ତା ଉପରେ ଠିଆ ହୋଇ କହିଲେ—"ଓ ହୋ ! ଏଇ ସବୁ ଛୋଟ ଛୋଟ କଥା ତମେ ଯାହା ଧରି ବସ । ଗପ କରି ଆସିଲେ ତମେ ନିଜେ ଟିକେ ଫୁର୍ତ୍ତି ହେବ ବୋଲି କହୁଥିଲି ।"

ଶୋଭା ଦାସ୍ ନିଜ ଘର ଭିତରକୁ ପଶି ଘଡ଼ି ଦେଖନ୍ତି । ଆଠଟା ପନ୍ଦର ବାଜିଚି । ଆଉ ଘଣ୍ଟାଏ ଗଲେ ସେ ସାବୁନ୍ ଲଗାଇ ମୁହଁର ମେକ୍‌ଅପ୍ ଧୋଇବେ ଓ କ୍ରିମ୍ ଲଗାଇବେ । ସେତିକିବେଳେ ଅବଶ୍ୟ ତାଙ୍କର ମନେ ପଡ଼ିଲା କାଲି ମେହେରା ଘରେ ପାର୍ଟି ଅଛି । ପୁଅ ଝିଅଙ୍କ ଖିଆପିଆ ସାରୁ ସାରୁ ସେ ମନେ ମନେ ନିଜ ଶାଢ଼ୀମାନଙ୍କୁ ଦରାଣ୍ଡି ଗଲେ—ବାଙ୍ଗାଲୋର ସିଲ୍‌କ୍‌ଟା ତ ମାତ୍ର ସେ ଗତମାସର ବଦାୟୁ

ଷ୍ଟେକଟିରେ ପିନ୍ଧିଛନ୍ତି; ନୂଆ ସିଫନ୍ ଶାଢ଼ୀଟା ଯଦ୍ୱା ଲେଭ ସମ୍ଭାଳି ନ ପାରି ଚଲି ଲେଡ଼ିଜ୍ କ୍ଲବ ଘରେ ପିନ୍ଧି ପକାଇଲେ, ହେଲେ କିଏ ଜାଣିଥିଲା ଏତେ ଶୀଘ୍ର ପାର୍ଟିଟାଏ ଆସୁଚି ବୋଲି ? ଓ ତାପରେ ସେ ପାର୍ଟିକୁ ଆମନ୍ତ୍ରିତ ହୋଇ ଆସିବାକୁ ଯାଉଥିବା ଅନ୍ୟମାନଙ୍କୁ ଅନ୍ଦାଜ କଲେ, ରାଠୋର ହେରିକାଙ୍କ ସାଙ୍ଗରେ ଆଜିକାଲି ଆଉ ମେହେରା ହେରିକାଙ୍କର ପଡ଼ୁନି । କାଲି ଡ଼ାକଚନ୍ତି କି ନାହିଁ ତାଙ୍କୁ ଦେଖିବା କଥା ।

ବର୍ତ୍ତମାନ ବାଞ୍ଛିତ ପାର୍ଟିଟିରେ ଉପସ୍ଥିତ ରହି ସେ ପ୍ରତିଟି ମୁହୂର୍ତ୍ତର ବିନିଯୋଗ କରୁଥିଲେ । ବାଁ ପାଖ ଦୁ' ତିନିଜଣ ମହିଳା ଧୀମା ସ୍ୱରରେ ଆପଣା ଭିତରେ କ'ଣ ଗୋଟାଏ ଘରୁଆ କଥା ପକାଇଲେଣି । ଶ୍ରୀମତୀ ଦାସ୍ ଭାବିଲେ, କାଣ୍ଡଜ୍ଞାନ ନାହିଁ ଏମାନଙ୍କର, ସ୍ଥାନ କାଳ ନ ବାଛିକି ମାଇପି ଗପ ! ହେଲେ କାନ ଡେରିଲେ ମାଇପି ଗପ ସିନା, ଘରୁଆ ନୁହେଁ—

—"ଟ୍ରେନ୍‌ରେ ଏଥର ଫେରିଲା ବେଳେ ଯେପରି ପ୍ଲେଟ୍‌ସ୍ ଆଉ ନେପ୍‌କିନ୍ ରଖିବାକୁ ଭୁଲି ଯାଇଥିଲି । ସିଏ ତ ବାଟରେ କିଛି ଖାଇଲେନି, ଝାଡ଼ା ଉପାସରେ ଚାଲିଆସିଲେ ପୁରା । କହିଲେ ଷ୍ଟାର୍ଭ କରିବ ପଛକେ, ଟିଫିନ୍ ଡବାସୁଦ୍ଧା ଧରି ଖାଇବ ?"

ଅନାବଶ୍ୟକ ଅନ୍ତରଙ୍ଗିତ ହସ ।

ଶ୍ରୀମତୀ ଦାସ୍ ଜୈନ୍ ସାହାବ କହୁଥିବା କଥା ଆଡ଼େ ମନ ଦେଲେ, ତାଙ୍କର ସ୍ୱାମୀ ଦାସ୍ ଗୋଟିଏ ସୋଫାରେ ବସିଛନ୍ତି, ଯା ହେଉ । ଜୈନ୍ ସାହାବ କହୁଥିଲେ ତାଙ୍କର କେଉଁ ସମ୍ପର୍କୀୟଙ୍କର କାର୍ ଏକ୍‌ସିଡେଣ୍ଟ୍ କଥା, ଇମ୍ପୋଟେଡ୍ କାର୍‌ଟା ଚୂର୍ମାର୍ ହୋଇଗଲା । ଡ୍ରାଇଭର୍ ସେଇଠି ମରିଗଲା । ସିଏ ନିଜେ ଏବେ ବମ୍ବେରେ ପଡ଼ିଚନ୍ତି ଯଶ୍‌ଲୋକ୍ ହସ୍‌ପିଟାଲ୍‌ରେ ।

ସମସ୍ତଙ୍କ ମୁହଁ ଗମ୍ଭୀର ଦିଶୁଥିଲା, ମହିଳାମାନେ ଏଥର କାରୁଣ୍ୟଭରା ଦୃଷ୍ଟିରେ ଚାହିଁଥିଲେ ଜୈନ୍ ସାହାବଙ୍କ ଆଡ଼େ । ଶୋଭା

ଦାସ୍ ଲକ୍ଷ୍ୟ କଲେ, ଶ୍ରୀମତୀ ବୋଷ୍ ଏକ ଅନ୍ତରଞ୍ଜିତ କାରୁଣ୍ୟ ନେଇ ଜୈନ୍‌ଙ୍କ ମୁହଁକୁ ଚାହିଁଛନ୍ତି, ଅଥଚ ତାଙ୍କ ମୁହଁ କେଉଁଥିପାଇଁ କେଜାଣି, ଜମା ସ୍ୱାଭାବିକ ଦିଶୁନାହିଁ, ବୋଧହୁଏ ଓଠଟାକୁ ଏମିତି ଢଙ୍ଗରେ ଚାପି ଗୋଜେଇ ନ ଥିଲେ ଆଉ ଟିକିଏ ନାଟୁଆଳି ଦିଶନ୍ତା । ଶୋଭା ଦାସ୍ ଅନ୍ୟ ସମସ୍ତଙ୍କ ମୁହଁକୁ ଥରେ ଅନେଇଗଲେ । କାହା ମୁହଁଟି ସତରେ କରୁଣ କି ଦୁଃଖିତ ଦେଖାଯାଉଚି ଭଲ, ଯେମିତି ଦିଶେ ନିଜ ପୁଅଟି ପଡ଼ିଯାଇ ଆଣ୍ଠୁ ଗଣ୍ଠି ଟିକିଏ ଛିଡ଼ିଗଲେ, ଏମିତି କି ଝିଅଟି ପିଲା ବେଲେ ଘରେ ହାତରୁ ପଡ଼ି ପ୍ଲେଟଟିଏ ଭାଙ୍ଗିଗଲେ ।

ଆଉ ଠିକ୍ ଏତିକିବେଳେ, ଜୈନ୍ ସାହେବଙ୍କ ଉତ୍ତରରେ ଦାସ୍ କହୁଥିଲେ ଭାବଗମ୍ଭୀର ସ୍ୱରରେ—"ଭଗବାନ ବଡ଼ଲୋକ । ସବୁରି ଉପରେ ସେଇ ଗୋଟିଏ ଶକ୍ତି କାମ କରୁଛି । ସିଏ ଯାହା କହୁ ନା କାହିଁକି, ସିଏ ଇଚ୍ଛା କଲେ ଯେ କୌଣସି ବିପଦରୁ ମଣିଷକୁ ତାରିଦେବେ । ତେବେ ଯଶ୍‌ଲୋକ୍‌ଠୁ ଭଲ ଡ଼ାକ୍ତରଖାନା ଆଉ କୋଉଠି ନାହିଁ, ବିଦେଶର ଯେ କୌଣସି ଭଲ ହସ୍‌ପିଟାଲ ସାଙ୍ଗରେ ଟକ୍କର ଦେଇପାରିବ ଯଶ୍‌ଲୋକ୍..." ଏତିକିବେଳେ ବିଜୁଳି ଲାଇନ୍ ଚାଲିଗଲା ।

ପ୍ରଥମ କେତୋଟି ଆଶ୍ଚର୍ଯ୍ୟ ଓ କ୍ଷୋଭ ସୂଚକ ଉଚ୍ଚାରଣ ପରେ କେଇ ମିନଟ୍ ଲାଗି ନିବୀଡ଼ ଅନ୍ଧକାର । ମିଷ୍ଟର୍ ମେଧ୍ୱାଙ୍କ କହିଲେ—"ହନି ! ଇମର୍ଜେନ୍‌ସି ଲାଇଟ୍‌ଟା କୋଉଠି ରହିଲା ?"

—"ସିଏ ଜଳୁଚି କୋଉଠି ? ତମର ପରା ନୂଆ ବ୍ୟାଟେରୀ କିଣି ସେଥିରେ ପକେଇବାକୁ ଥିଲା ?"

—"ଓ ! ହେଲେ ଆଉ କିଛି ଲ୍ୟାମ୍ପ୍ ଫାମ୍ପ୍ ରଖିନ । ଇଏ ତ ଦକ୍ଷ ଗୃହିଣୀର ଲକ୍ଷଣ ନୁହେଁ ପ୍ରିୟା ।"

ଶ୍ରୀମତୀ ମେଧ୍ୱା ଉତ୍ତର ଦେବା ଆଗରୁ ଆଉ ଜଣେ ପୁରୁଷକଣ୍ଠ ଶୁଭିଲା—"ଆଉ ଆଉ । ବ୍ୟସ୍ତ ହୁଅନ୍ତୁନି, ଝଡ଼ ତୋଫାନ କିଛି ନାହିଁ ଯେତେବେଳେ ଏ ମିନଟ୍‌ରେ ଆସିଯିବ ଲାଇଟ୍ ।"

ଆଉ ଜଣେ କହିଲେ—"ହଉନା କେତେ ମିନଟ୍ ଅନ୍ଧାର ! ବଦାନ୍ଦ ବାର୍ଷିକୀ ପରି ରୋମାଣ୍ଟିକ୍ ସନ୍ଧ୍ୟାଟାରେ କିଛି ସମୟ ଅନ୍ଧାରକୁ ବି ଉପଭୋଗ କରିବା କଥା ନା ନୁହେଁ ?"

ହାସ୍ୟରୋଳ ।

ନିସ୍ତବ୍ଧ ନିର୍ଲିପ୍ତ ଅନ୍ଧାର । ଶ୍ରୀମନ୍ତ ଦାସ୍ ହଠାତ୍ ଅନୁଭବ କଲେ ତାଙ୍କ ମୁହଁର ମାଂସପେଶୀ କେତେବେଳେ ସହଜ ହୋଇଯାଇଛି, ଓଠମୁହଁରେ ଚପା ହସ ବା ସୁନ୍ଦର କାରୁଣ୍ୟ କିଛି ହିଁ ନାହିଁ, ସାଧାରଣ ଅନୁଭୂତ ହେଉଛି ମୁହଁଟି ଆପେ, ଅନାୟାସରେ । ସେ ଏଥର ଦୁଇଗୋଡ଼ ସିଧା କରି ବସି ମେରୁଦଣ୍ଡ ଟିକଏ ସଳଖିଲେ । ତାପରେ ଦେହକୁ ହୁଗୁଳାଇ ଅଭ୍ୟସ୍ତ ଭାବେ ଘରେ ବସିଲା ଭଳି କୁଜା ହୋଇ ବସିଲେ । ଯଦିଓ ସେ ସେତେବେଳେ ଭାବୁଥାଆନ୍ତି—ଆହାଃ ! ବିରଳ ସନ୍ଧ୍ୟାଟିର ଅମୂଲ୍ୟ ମୁହୂର୍ତ୍ତମାନ ଏଇମିତି ଗଲା ପରା ନଷ୍ଟ ହୋଇ !

ପାଞ୍ଚ ମିନଟ୍ ଚାଲିଗଲା । କୋଠରୀର ବିଭିନ୍ନ ଦିଗରୁ କଥାବାର୍ତ୍ତାର ଭଗ୍ନାଂଶ ସବୁ ଶୁଭୁଛି, ସମସ୍ତଙ୍କ ଧ୍ୟାନ ଆକର୍ଷଣ କଲାଭଳି କଥା କହିବାକୁ ସାହସ ପାଉନାହିଁ କାହାରି ଏ ଅନ୍ଧାରରେ । ଶେଷ ଦାସ୍ ହାଇ ମାରିଲେ । ଓଠ ଉପରେ ରୁମାଲକୁ ଛୁଇଁ ନ ଛୁଇଁଲା ପରି ରଖି ପାଟିକୁ ପାରୁପର୍ଯ୍ୟନ୍ତ ବନ୍ଦ କରି ହାଇଟିକୁ ସମ୍ଭାଳ ପିବାକୁ ଚେଷ୍ଟା କଲାବେଳେ ତାଙ୍କର ଖିଆଲ ହେଲା, ଏଇଠି ଏବେ ଖୋଲାଖୋଲି ହାଇ ମରାଯାଇପାରେ; ପାଟି ବନ୍ଦ କରି ନାକ ଫୁଲେଇ ଗଳା ରୁଦ୍ଧ ହାଇଟିକୁ ଗିଳିବାର ଚେଷ୍ଟାରେ ଆଖିକୁ ଲୁହ ନେଇ ଆସିବାର କିଛି ଦରକାର ନାହିଁ ଏବେ । ସେ ବଡ଼ ଆଁ ଟିଏ କରି ହାଇ ମାରିଲେ । ନାହିଁ ନଥିବା ପରିବ୍ୟାପ୍ତ ହାଇଟିଏ ତାଙ୍କ ମୁହଁକୁ ଆସିଲା କୁଆଡ଼ୁ କେଜାଣି, ତେବେ ଅଧାଅଧି ଅବସ୍ଥାରେ ସେ ଚୁନିଆଁ ହୋଇଗଲେ ଯେ ହଠାତ୍ କାଳେ ଲାଇଟ୍ ଚାଲିଆସି ହାଲୋକ କରିଦେବ ତାଙ୍କ ମୁଖ ବ୍ୟାଦାନକୁ । ସେଇଠି ଅଧାରେ ମରିଗଲା ତାଙ୍କ ହାଇଟି ।

ହେଲେ ଲାଇଟ୍ ଆସିଲା ନାହିଁ । ପାଖରେ ଶ୍ରୀମନ୍ତ ରାଉତଙ୍କୁ ଶ୍ରୀମନ୍ତ ମେହେରା ବଖାଣୁଛନ୍ତି ତାଙ୍କ ଦୁଃଖ—

—"ଡେସର୍ଟ୍' ଲାଗି ଟିନ୍‌ଡ୍ ଫ୍ରୁଟ୍ କେତେଟା କିଣିଥିଲି, ଖୋଲି ଦେଖେତ ସବୁ ଯାକ ଖରାପ । ହେ ଭଗବାନ୍, ନ ଗୁଣି ପକାଇ ଦେଇଥାନ୍ତି ଯଦି କିଣ ହୋଇଥାନ୍ତା କହନ୍ତୁ ତ ! ପଏଜନିଂ ଲାଗି ଜେଲ ଯିବାକୁ ହୋଇଥାନ୍ତା ମୋତେ ।"

ଶୋଭା ଦାସ୍ ଅନ୍ୟମାନଙ୍କ ସାଙ୍ଗରେ 'ରିଏଲି !' କହିଲେ ନାହିଁ କି ଜମାରୁ ହସିଲେ ନାହିଁ । ମନେମନେ କହିଲେ—'ହଉ, ତା ମାନେ ତୁ ଅନ୍ଧାରରେ ସୁଦ୍ଧା ଗୃନ୍‌ସ୍ ମାରବୁ, ଦେଖେଇ ହେବୁ, ତେବେ ଯାଇ ଗ୍ଭଡ଼ବୁ । ଶସ୍ତା ଡେସର୍ଟ୍'ଟାଏ ଆମକୁ ଖୁଆଇବାର ମତଲବ ତୋର ।

ଏଥର ଶୋଭା ଦାସ୍ ଲମ୍ବା ହାଇଟିଏ ମାରିଲେ, ଉନ୍ମୁକ୍ତ ଅନାୟାସ ହାଇଟିଏ, ଏମିତିକି ହାଇ ଶେଷରେ ହାଲୁକା ସରୁ ସ୍ୱରଟିଏ ଗଳାରୁ ବାହାରିଯିବାକୁ ବି ରୋକିଲେ ନାହିଁ ।

.ଲାଇଟ୍ ଯିବା ଦଶମିନିଟରୁ ଅଧିକ ହୋଇସାରିଥିଲା । ମହମବତି ଆଣିବାର ଆଲୋଚନା ସତ୍ତ୍ୱେ ସେ ଯାକତ୍ ତାହା ଅଣାଯାଇ ନଥିଲା, ମଝିରେ ଜଣେ ଅଧେ ହାଆସିଲି ମାରିଥିଲେ କେବଳ । ରାସ୍ତାରୁ ଜଣାଯାଉଥିଲା ପୁରା କଲୋନିର ଲାଇଟ୍ ଯାଇଛି । ଜୈନ୍ ସାହାବଙ୍କ ସ୍ୱର ଶୁଣାଗଲା—ମିଷ୍ଟର୍ ମେହେ୍‌ରା, ଟିକେ ଫୋନ୍ କରି ବୁଝିଲି କେତେବେଳ ଯାଏଁ ଚୃଲିବ ଏ ପାଳା । ବଡ଼ ବଡ଼ ସିଟିରେ ଏ ସବୁ ଝମେଲା ନାହିଁ, କାହାରି ପାର୍ଟି କେବେ ଭଣ୍ଡୁର ହୁଏନି ବଜୁଳି ଲାଗି, ବୁଝିଲେ । ଏଠି ତ ହସ୍‌ପିଟାଲ୍‌ରେ ରୋଗୀ ମରିଯିବେ ହେଲାରେ, ଏଇ ବିଜୁଳି ଲାଗି । ଯଶ୍‌ଲୋକ୍‌କୁ ମୁଁ ପାଇଥିଲି, ଚମତ୍କାର ବ୍ୟବସ୍ଥା, ବୁଝିଲେ..."

ଶ୍ରୀମନ୍ତି ଦାସ ଆସୁଥିବା ସ୍ୱରରୁ ଜୈନ୍‌ଙ୍କ ଜାଗା ଠଉରେଇ ନେଲେ, ଏବେ ସେ ଗରମ ଯୋଗୁଁ ଜାଗା ବଦଳାଇଥିଲେ ନା କଣ । ଅନ୍ଧାର ସୁହେଇ ଗଲାଣି, ଆକୃତିମାନ ବାରି ହେଉଚି । ଆଉ ଶ୍ରୀମନ୍ତି ଦାସ ଜୈନ ସାହାବଙ୍କ ଅନର୍ଗଳ କହି ଚାଲିଥିବା ମୁହଁକୁ ନିରୂପଣ କରି ସିଧା ଅନେଇ ଖଟେଇ ହେଲେ ।

ସୁନ୍ଦର ସୁଶୋଭନ ମିଠା ଖଡେଇଦେବା ନୁହେଁ, ଯାହା ତରୁଣୀ ମୁହଁରେ ଫୁଟିଲେ ପୁରୁଷକୁ ଉଚ୍ଚାଟ କରେ। ତାହା ସିଧାସଳଖ ଖଡେଇ ଦେଲେ ସେ, ମୁହଁ ଓଠ ମୋଡ଼, ନାକ କୁଞ୍ଚେଇ।

ସେଇଠୁ ତାଙ୍କୁ ହସ ମାଡ଼ିଲା ନିଜ କାମରେ। ଏଣିକି ତେଣିକି ଅନେଇଲେ ସେ, କାଳେ ଧୂଆଁଳିଆ ଧରିବାକୁ ଆରମ୍ଭ କରିଥିବା ଅନ୍ଧାରରେ ଦିଶିଯାଇଥିବ ତାଙ୍କ ମୁହଁ ବୋଲି। ଠିକ ଆଗରୁ ଆସୁଥିବା ହାଇ, କସ୍‌ମସ ଭାବ କୁଆଡ଼େ ଉଭେଇ ଯାଇଥିଲା। ମୁହଁଟିକ ଭିତରେ ଟେଙ୍ଗା ଲାଗୁଚି, ଚଙ୍ଗ୍ ଚଙ୍ଗ୍ ଲାଗୁଚି, ଖୋଲାମନରେ କିଣ ଗୋଟାଏ କରିଦେବାଇବାକୁ ମନ ହେଉଚି। ଅନ୍ଧାରରେ ଅକପଟ ହେଇଯିବାକୁ, ନିର୍ଭୟ ହେଇଯିବାକୁ ମନ କହୁଚି।

ଏକୁଟିଆ ଥିଲାବେଳେ ଏ ଅନୁଭବ ହୁଏ ନାହିଁ। ଘରେ ଥିବା-ବେଳେ ମୁହଁ ଦେହର ଭାବଭଙ୍ଗୀ ସହଜ ଥାଏ ସତ, କିନ୍ତୁ ନିୟମର ଡୋରି ସେ ଛୁଡ଼େଇ ପାରନ୍ତି ନାହିଁ, ତେଣୁ ହାଇ ମାଡ଼େ। ଏତେ ବେଶୀ ସେ ପଡ଼ିଯାଇଥାଆନ୍ତି ନିୟମର ଅଭ୍ୟାସରେ ଯେ ନିରନ୍ତର କାମରେ ଲାଗିଥିବା ସତ୍ତ୍ୱେ ବେଳେ ବେଳେ ମୁଣ୍ଡଟା ଶୋଇପଡ଼େ। ଆଜକାଲି ସେ ସକାଳୁ ଉଠି ଠାକୁରଙ୍କ ଫଟୋକୁ ଜୁହାର ହେବାକୁ ଭାବୁ ଭାବୁ କାନ୍ଥ ଘଡ଼ିକୁ ଅନାନ୍ତି ସମୟ ଲାଗି ଆଉ ଦେଖୁ ଦେଖୁ ଜୁହାର ହେଇ ପଡ଼ନ୍ତି। ଗାଧୋଇ ସାରି ଆସି ସ୍ନୋ ଶିଶିରୁ ଟିପେ ନେଇ ଲମ୍ବଦର୍ପଣ ବଦଳରେ କାନ୍ଥରେ ଟଙ୍ଗା ବଡ଼ ପେଣ୍ଟିଂଟା ଆଗରେ ଠିଆ ହେଇ ମୁହଁରେ ମାରି-ହେଇ ପଡ଼ନ୍ତି। ଅଥଚ ଏଇଠି ଏ ଗହଳି ଅନ୍ଧାର ଭିତରେ ମନ ତାଙ୍କର କୁଳୁକୁଳିଆ ଢୁଆଟିଏ ପରି ଏହିକ୍ଷଣି କଣ କରିବ ବୋଲି ଚର ଚର ହେଉଛି।

ହେଇ ସେଠି ବସିଛନ୍ତି ମିସେସ୍ ଜୈନ, ଫୁଲେଇ ହେଇ କହୁଛନ୍ତି —"ଏଥର ସ୍ୱାମୀଙ୍କଠୁ ଡାଇମଣ୍ଡ ମୁଦି ନେଲ କି ମିସେସ୍ ମେହେରା? ଭଲ କଲ। ହେଲେ ଡାଇମଣ୍ଡରୁ ମୋ ମନ ଛାଡ଼ିଯାଇଛି ଜାଣ, ଯେଉଁ ଦିନଠୁ ସିନେମାହଲରେ ମୋର ସେଇ କାନଫୁଲରୁ ଗୋଟାଏ ଖସି-ପଡ଼ିଲା..."

ଶ୍ରୀମନ୍ତ ଦାସ ଖଡେଇ ହେଲେ ମିସେସ୍ ଜୈନ୍‌ଙ୍କ ମୁହଁ ଆଡ଼େ ଅନେଇ, ଓଠ ନେଫେଡ଼ି ଜଭ କାଢ଼ି ଖଡେଇ ହେଲେ । ଆଉ ସେହି ମୁହୂର୍ତ୍ତରେ ଲାଇଟ୍ ଗୁଲିଆସିବାର ଭୟ ତାଙ୍କୁ ଜଡ଼ କରିଦେଲା, ମୁହଁ ସାଧାରଣକୁ ଫେରିଲା· ବେକକୁ ତାଙ୍କ ବେକମୂଳଟି ଝାଳ କରିଛି ଆସିଥିଲା ।

ଅନ୍ଧାର ଜାରିଥିଲା ପୂର୍ବବତ୍ । ଶ୍ରୀମନ୍ତ ଦାସଙ୍କର ଛାତି ଦୁକୁ ଦୁକୁ ବଢ଼ି ଯାଉଥିଲା, ତଥାପି ପ୍ରବଳ ଗୋଟାଏ କୁତୁକୁତୁର ଅନୁଭବକୁ ସେ ପ୍ରାଣପଣେ ଦମନ କରୁଥିଲେ । ଦୁଇ ପାଖରେ ମହିଳାମାନଙ୍କର କଥାବାର୍ତ୍ତା ତାଙ୍କ କାନକୁ ଜମା ଶୁଭୁ ନଥିଲା ।

ଏଥର ସମ୍ଭାଳ ସ୍ୱାଭାବିକକୁ ଫେରି ଆସିବାକୁ ନିଷ୍ଫଳ କରୁ କରୁ ସେ ସାମ୍ନା ସୋଫାରୁ ଆସୁଥିବା ଦାସଙ୍କ ସ୍ୱରକୁ କାନ ଡେରିଲେ । ଜୈନ ସାହାବଙ୍କ ଉଦ୍ଦେଶ୍ୟରେ ସେ କହୁଥିଲେ ନିଷ୍ଫଳ । —"ଆପଣ ସାର୍ କ୍ୟାମେରା ଲାଗି କଲର ରିଲ୍ ପାଇଲେ ? ମୁଁ ଅଣେଇଚି ଦୁଇଟା ବମ୍ବେରୁ ମୋର ଏବେ ଦରକାର ନଥିଲା । ଆପଣଙ୍କ ଝିଅ ଜ୍ୱାଇଁଙ୍କର ଆସିବାର ଥିଲ ପର, କାମରେ ଆସିଯିବ···"

ଶ୍ରୀମନ୍ତ ଦାସ ଏଥର ଖଡେଇ ହେଲେ ଦାସଙ୍କୁ ଲକ୍ଷ୍ୟ କରି—ତଳ ଓଠ ଅଧଇଞ୍ଚେ ଲମ୍ବେଇ, ମୁହଁ ବଲେଇ, ଚୁପକନ ହାତର ବୁଢ଼ା ଆଙ୍ଗୁଠି ଦେଖାଇ । ତଥାପି ସନ୍ତୋଷ ନ ଆସିଲାରୁ ତଳ ଓଠ ଉପରେ ଉପର ଦାନ୍ତ ଚଢ଼େଇ ନାକ କୁଞ୍ଚେଇ ଖେଙ୍କାରି ହେଲାପରି ମୁହଁ କରି ।

ଲାଇଟ୍ କଥା ଭାବି ପୁଣି ସେ ନିଜକୁ ସଂଯତ କଲେ ଓ ଏଥର ତାଙ୍କର ନିଃଶ୍ୱାସ ଜୋରରେ ଯାଉଥିଲା ଆସୁଥିଲା । କୁତୁକୁତୁ ଭାବ ଆଉ ନ ଥିଲା ।

ସେପାଖରୁ ଅପରିଚିତ ପୁରୁଷ ସ୍ୱରଟିଏ ଶୁଭୁଥିଲା, ଧୀର ଉଚ୍ଚଳା ଉଚ୍ଚଳା, ପୁରୁଷପଣ ଜମା ନାହିଁ କି ସେଥିରେ । ଶ୍ରୀମନ୍ତ ଦାସ ବୁଝିଲେ, ଏ ମାଲହୋତ୍ରା, ନୂଆ ପର୍ସନାଲ୍ ଅଫିସର୍ । ସବୁଠାରୁ ଜୁନିୟର୍ ବୋଲି

ଝଟସ୍ ଆସିଲାବେଳକୁ ଭରସି ବେଶୀ କଥା କହୁ ନଥିଲା, ଯିଏ ଯାହା କହୁଲା ତା ମୁହଁକୁ ପିଇଗଲା ପର ଅନେଇ ମୁରୁକ ଅକାରଣ ହସି ଲାଗିଥିଲା । ତାହାର ଅ.ଡ଼କୁ ଶୋଭା ଜଉ ଗୋଜଆ କର ନାକ କୁଞ୍ଚେଇ ଖଟେଇ ହେଲେ ଓ ପେଟ ଭିତରୁ ଉବୁକ ଆସୁଥିବା ଅପ୍ରତ୍ୟାଶିତ ହସଟିକୁ ଆକଟିବା ଲାଗି ଆପଣାକୁ ଲାଇଠ୍ ଆସିବାର ଭୟ ଦେଖାଉ ଦେଖାଉ ସେଇ ଝଗକୁ ଅନେଇ ଡାହାଣ ଆଖିଟି ବୁଜ କଷିକର ଆଖିଠାଏ ମାରିଦେଲେ ।



# ନୀଳ ଛବି

ସୁଚିତ୍ରା ନିଜ ଚେମ୍ବରରେ ପଶି ଚଉକିରେ ବସୁ ବସୁ ପର୍ସ ଭିତରୁ ପୁଣି ଫଟୋଟି କାଢ଼ିଲେ ଓ ଏଥର ବି ମୁହୂର୍ତ୍ତେ ଆଖି ସ୍ଥିର କରି ପୁଣି ଚଟ୍‌କିନି ପର୍ସରେ ପୂରାଇ ଜିପର୍ ଟାଣିନେଲେ । ବୁକ୍‌ପୋଷ୍ଟରେ ଆସିଥିବା କେତୋଟି କମ୍ପାନୀର ଧରାବନ୍ଧା ଔଷଧ ବିଜ୍ଞାପନର ଚିଠି ଡାକ ପରି ଥରେ ଖୋଲାଇନେଇ ପୁଣି ଥାକ କରିଦେଇ ଚପରାସୀକୁ ପେସେଣ୍ଟମାନଙ୍କୁ ଆଣିବାକୁ ଅନୁମତି ଦେଲେ—କେବଳ ହାତର ଅଭ୍ୟସ୍ତ ଗୋଟିଏ ଭଙ୍ଗୀରେ ।

କବାଟ ପାଖରେ ଭିଡ଼ ଜମେଇଥିବା ରୋଗୀମାନଙ୍କୁ ଚପରାସୀ ଘଉଡ଼ିଲା, ଧାଡ଼ିବାନ୍ଧି ଅପେକ୍ଷା କରିବାକୁ କହିଲା, ସଂକ୍ଷିପ୍ତରେ ହସ୍‌ପିଟାଲର ମାନ୍ତ ନିୟମ ବୁଝାଇଲା ଓ ହାତରେ ମାଟିଆ କାଗଜ ଚିରୁଡ଼ାମାନଙ୍କରୁ ଗୋଟିକରୁ ନାଁଆଟିଏ ପଢ଼ି ଭିତରକୁ ଆସିବାକୁ ହୁକୁମ କଲା । ସୁଚିତ୍ରା ଏ ଭିତରେ ତାଙ୍କ ପଟେସ୍କ'ର ସଫେଦ ହାତରେ ନିଜ ଚଷମାଟି କାଢ଼ି ପିନ୍ଧି ସାରିଥିଲେ ଓ ଷ୍ଟେଥୋଟି ବି ତାଙ୍କ ଶରୀରରେ ଯଥାସ୍ଥାନ ପାଇ ସାରିଥିଲା । ରୋଗିଣୀଟି ପଶିଆସୁ ଆସୁ ଥତମତ ହୋଇ ପର୍ଦ୍ଦାକୁ ମୁଠେଇଲା ଓ ହଠାତ୍ ତା' ନଜର ପର୍ଦ୍ଦାଟିକୁ କୁଞ୍ଚେଇ ବାନ୍ଧିବା ପାଇଁ ବ୍ୟବହୃତ ହୋଇଥିବା ଘା' ବ୍ୟାଣ୍ଡେଜକର କନା ଉପରେ ପଡ଼ିଲା କ୍ଷଣି ଚମକିପଡ଼ି ହାତ ଛୁଟିଦେଲା—ସାପ ଛୁଇଁଲା ପରି । ତେଙ୍ଗା ରୋଗିଣୀ ସ୍ତ୍ରୀଲୋକଟିଏ, ମୋଟା ପିନ୍ଧାଲୁଗା ଓଢ଼ଣା ସତ୍ତ୍ୱେ ଉପର ଛାତିରେ ଝାଡ଼ାଏ ନେଳୀ ମାଳ ତଳେ ପଞ୍ଜରା ହାଡ଼ ଦିଶୁଛି । ମୁହଁଟି ଏଠାକୁ ଆସୁଥିବା ଅନେକ ମୁହଁ ପରି ବିଷାଦ ରେଖାପ୍ଳୁତ ମୁଖାଟିଏ ।

ସୁଚନ୍ଦା ତାର ଅସୁସ୍ଥତା କ'ଣ ପଚାରିଲେ ଓ ଗାରକଟା କାଗଜରେ ଟିପିଲେ, ଗୁଡ଼ିଏ ଜିଭ ପରୀକ୍ଷା କଲେ ଓ ଭାବିଲେ ଇଏ ଗଲା ପରେ ଫଟୋଟି ଟିକିଏ କାଢ଼ି ଭଲକରି ଦେଖିନେବେ । ନ ଦେଖିଲାଯାଏ କୁରୁ କୁରୁ ଲାଗୁଥିବ । ଆଉ ନିଜ ଫଟୋଟି ଦେଖିବାକୁ ସେ ଏତେ ହେଜା—ହେଉ ହେଲା ବା କୁଣ୍ଠା—କାହିଁକି କରୁଛନ୍ତି ? ରୋଗିଣୀଟି କିନ୍ତୁ ପ୍ରେସ୍କ୍ରିପ୍ସନ୍ ପାଇ ବି ଉଠିଲା ନାହିଁ, ନିଜ ଦେହ ଦୁଃଖ କଥା ଗଡ଼ଗଡ଼ କରି ଗାଇଗଲା ଆତୁର ମାନେ । ସୁଚନ୍ଦା ତା' ହାଡ଼ୁଆ ମୁହଁଟିକୁ ଦେଖିଲେ ଓ ସାମ୍ନାର ଦୃଶ୍ୟଟିକୁ ନିର୍ଲିପ୍ତରେ ଅନୁଭବ କରି ମନେପକାଇଲେ ତାଙ୍କ ନିଜ ମୁହଁଟି କେତେ ହାଡ଼ୁଆ ଦିଶୁଛି ଫଟୋରେ—ଏମିତିକି ଗାଲ ବି ସାମାନ୍ୟ ଖାଲୁଆ ନା କ'ଣ । ବର୍ତ୍ତମାନକୁ ଫେରିଆସି ସେଇଠୁ ଅଧୈର୍ଯ୍ୟ ମୁଣ୍ଡ ହୁଙ୍କାର କହିଲେ—ଠିକ୍ ଅଛି, ବୁଝିଲ, ଏଇ ଔଷଧ ସକାଳେ ସନ୍ଧ୍ୟାରେ...... ।

ସ୍ତ୍ରୀଲୋକଟି ଉଠିଲା ପରେ କିନ୍ତୁ ସୁଚନ୍ଦାଙ୍କ ଫଟୋ ଦେଖିବାର ଜୁ ନ ଥିଲା, କାରଣ ସେ ନ ଉଠୁଣୁ ଚପ୍ରାସୀ ତା'ପର ରୋଗୀଟିକୁ ଡାକି ସାରିଥିଲା । ଆତୁର ଅଜସ୍ର ମଫସଲରୁ ଆସିଥିବା ରୋଗୀଙ୍କ ପରି ଏ ନାକ କାନରେ ଗହଣା ମଣ୍ଡି ହୋଇଥିବା ସ୍ତ୍ରୀଟି ଭୟ ସଙ୍କୋଚରେ ମ୍ରିୟମାଣ ହୋଇ ପଡ଼ିଥାଏ ଓ ତା' ସ୍ୱାମୀ ତା' ପଛପାଖେ ଥାଇ ତାକୁ ସାହସ ଦେଉଥାଏ, ପ୍ରବୋଧନା ଦେଉଥାଏ । ତମେ ସମୟ ବଞ୍ଚାଇବାକୁ ଯେତେ ରେକ୍ଟୋକ୍ ହୁଅ, ମାପିଚୁପି ଦରକାରି କଥା କୁହ, ଏଇସବୁ ଉମାର କେବେ ଅନ୍ତ ହୁଏ ନାହିଁ ।

ରୋଗୀଙ୍କ ସ୍ରୋତ ଭିତରେ ସୁଚନ୍ଦା କିନ୍ତୁ ହଠାତ୍ ନିଜଠିଁ ନୂଆ ଗୁଣଟିଏ ଆବିଷ୍କାର କଲେ—ଆଜି ତାଙ୍କ ହାତ ଯେମିତି ରୋଗର ହିସାବ ରଖୁଥାଏ କାଗଜ ଉପରେ, ମନ ବି ପ୍ରତି ମୁହଁ, ଅଙ୍ଗ ସୌଷ୍ଠବ, ପରି-ପାଟୀର ଟିପ୍ପଣୀ ନେଉଥାଏ । ଘଣ୍ଟାଏ କାଳ ନିରବଚ୍ଛିନ୍ନ ରୋଗୀ ଦେଖା ପରେ ସେ ଯେତେବେଳେ ଚଷମା ଖୋଲି ଆଖିପୋଛି ଚା' କପେ ପିଇଲେ, ନିଜକୁ ସାନ୍ତ୍ୱନା ପଦଟିଏ ପରି କଥାଟିଏ ମନରେ ପୁଛିଲା—ଏତେ ଲୋକ ଗୋଟିକ ପରେ ଗୋଟିଏ, ହେଲେ ସୁନ୍ଦର ସତେଜ ମୁହଁଟିଏ କାହିଁ ?

ସାନ୍ଧ୍ୟନାର ଶତକଡ଼ା ନବେ ଭାଗ ରଦ୍ଦ କରିଦେଇ ଅବଶ୍ୟ ସେତିକିବେଳେ ତାଙ୍କର ମନେ ପଡ଼ିଲା ଯେ, ଏଇଟା ଡାକ୍ତରଖାନା—ରୋଗ ହେଲେ ହିଁ ମଣିଷ ଆସେ ।

ପରେ ପରେ ତାଙ୍କୁ ମନର ଉତ୍ତର ମିଳିଲା ପରି ପଶିଆସିଲେ ମା'ଟିଏ ଓ ସୁନ୍ଦରୀ, ସମ୍ଭବତଃ ନବବିବାହିତା ଝିଅଟିଏ । ବୟସ ସତ୍ତ୍ୱେ 'ସ୍ୱାସ୍ଥ୍ୟ ହିଁ ସମ୍ପଦ'ର ବାଙ୍ଗଚିତ୍ର କଲା ପରି ଦିଶୁଥିବା ମା'ଟି ରୋଗୀ ପାଇଁ ଉଦ୍ଦିଷ୍ଟ ଷ୍ଟୁଲରେ ବସିପଡ଼ି, ସୁଚରିତା ପଚାରିବାରେ ପାଖରେ ଠିଆ ହୋଇ କାନ୍ଥ ଫଟୋକୁ ଖବରେର ହେଇ ଅନେଇଥିବା ଝିଅ ହାତକୁ ହଲାଇ ଦେଇ କହିଲା—କହ, ଡାକ୍ତରାଣୀ ମାଆଙ୍କୁ, କହ କ'ଣ ସେ ପଚାରୁଛନ୍ତି ।

ଏତିକିରେ ଅଳ୍ପବୟସ୍କା ଝିଅଟି ମୁହଁରେ ଲୁଗା ଗୁଞ୍ଜିଲା ଓ ସୁଚରିତାଙ୍କୁ ଚମତ୍କୃତ କରିଦେଇ କୁର୍‌କୁର୍ ହୋଇ ହସି ଉଠିଲା, ତା' ମା'ର ତାଗିଦ୍‌ରେ ତା' ହସ ବହୁଗୁଣିତ ହେଲା ଓ ସେ ଆକ୍‌ତା ମାକ୍‌ତା ହୋଇ ନାଲି ପଡ଼ିଗଲା ।

ସୁଚରିତା ଅତ୍ୟନ୍ତ ଭ୍ରୂକୁଞ୍ଚନ କରି ଲେଖା ପ୍ୟାଡ୍ ଉପରୁ ମାଆ ମୁହଁକୁ ଅନେଇ କହିଲେ—ଇଏ କ'ଣ ? ଏସବୁ ଢଙ୍ଗ ପାଇଁ ମୋର ସମୟ ନାହିଁ ।

ମାଆଟି ଏଥର ନଇଁପଡ଼ି ସଶବ୍ଦେ ଫୁସ୍‌ଫୁସ୍ କରି କହିଲା—କିଛି ନାଇଁ ମାଆ, ତାର ପିଲାପିଲି ହେବ, ପାଞ୍ଚମାସ ହେଲାଣି । ପ୍ରଥମଟି ଛଅ ମାସରୁ ନଷ୍ଟ ହୋଇଗଲା କି ନା, ସେଇଥିଲାଗି ନେଇ ଆସିଲି ।

ସୁଚରିତା ବିସ୍ମିତ ହେଲା ପରି ଝିଅଟିକୁ ଅନେଇଲେ । ଝିଅଟି ତା' ମାଆ କଥା ଶୁଣି ଗମ୍ଭୀର ହୋଇ ଯାଇଥିଲା କିନ୍ତୁ ସୁଚରିତାଙ୍କ ପ୍ରଥମ ଡାକ୍ତରୀ ପ୍ରଶ୍ନ ନ ଶୁଣୁଣୁ ଲୁଗା କାନିରେ ମୁହଁ ଗୁଞ୍ଜି ପୁଣି କୁରୁକୁରୁ ହସ ଆରମ୍ଭ କରିଦେଲା । ସୁଚରିତାଙ୍କୁ ବୁଝାଇଲା ପରି ତା' ମାଆ କହିଲା—ପାଗଳୀଟାଏ ମା, ସୁଦ୍ଧୁ ପାଗଳୀଟାଏ, ତା' କଥାରେ ରାଗ କରିବ ନାଇଁ ।

ଏ ଉକ୍ତି କେବଳ ବାତ୍ସଲ୍ୟ ମମତାରୁ କମ୍ବା ଏଥିରେ କିଛି ସତ୍ୟାସତ୍ୟ ଅଛି, ମାଆ ଝିଅ ଚାଲିଯାଏ ସୁଚରିତା ଠଉର କରିପାରିଲେ ନାହିଁ ।

ସେମାନେ ଗଳ୍ପଉପରେ ନଜରକୁ କହିଲେ—ଶୁଣିବାକୁ କିଛି ନାହିଁ ମୁହଁଟିରେ ସିନା, ମାନସିକ ଅସୁସ୍ଥତା ଅଛି ନିଶ୍ଚିତଭାବେ ।

ରୋଗୀ ପରେ ରୋଗୀ ଦେଖି ଯାଉଥିଲା ବେଳେ, ନୂଆ ଆଗନ୍ତୁକ ପାଇଁ ଡାକ୍ତରଖାନା ସାରା ଘୁରିଥିବା ଜୀବାଣୁ-ନାଶକ ଔଷଧ-ଗନ୍ଧ ପରି ସୁଚରିତାଙ୍କ ମନ ସାରା ଆବୋରି ରହିଥାଏ ଅନେକ ବର୍ଷ ପରେ ସଦ୍ୟ ଉଠିଥିବା ତାଙ୍କ ନିଜ ଫଟୋଟି । ଏ ଭିତରେ ଅବଶ୍ୟ ଆଉଥରେ ହେଲେ ସେ ଫଟୋଟି କାଢ଼ି ଦେଖିବାକୁ ଚେଷ୍ଟା କରି ନାହାନ୍ତି ।

ବାକିମାନଙ୍କର କାମ ଶେଷ ହେବା ପରେ ଶେଷ ରୋଗୀଟିକୁ ଚପ୍ରାସୀ ଯେତେବେଳେ ପଠାଇଲା, ସୁଚରିତା ଭଡ଼ମୋଡ଼ ହୋଇ ହାଇ ମାରିଲେ । ମଡ଼ିଆ ସ୍ତ୍ରୀଟି ଆତ୍ମବିଶ୍ୱାସର ହସ ସାଙ୍ଗକୁ ପାଇରିଆର ଗନ୍ଧ ଚହଟାଇ କହିଲା—କେତେବେଳୁ ଆସିଲଣି ମାଆ, ଏ ତମ ଚପରାସୀ କଣ ମୋତେ ଚିହ୍ନୁଚି ? ମୁଁ କହୁଚି ମାଆଙ୍କୁ କହ ମୁଁ ଆସିଚି, ମୋତେ ଟିକେ ଆଗେ ଦେଖିଦିଅନ୍ତୁ ।

ସୁଚରିତା ତାକୁ ଷ୍ଟୁଲରେ ବସିବାକୁ ଗମ୍ଭୀର ଆଙ୍ଗୁଳି ମୁଦ୍ରାରେ ନିର୍ଦ୍ଦେଶ ଦେଇ ଲେଖାକାଗଜ ଉପରେ ଆଖିରଖି କହିଲେ—ହୁଁ, କହ କଣ ହେଇଚି ।

—କଅଣ ଆଉ ହେବ ? ତମେ ଜାଣିନ ସେ କହିବି...

ଆଜି କିଛି ଗୌରଚନ୍ଦ୍ରିକା ତଥା ପୂର୍ବ ପ୍ରେସ୍କ୍ରିପ୍ସନ୍ ଦେଖିବା ପରେ ସୁଚରିତା ପଚାରିଲେ—ଔଷଧ ଖାଉଚ ? କେତେ କରି ?

—କେତେ କରି ଆଉ ? ସେଇ ତମେ ଯାହା କହିଥିଲ, ଦିନକରେ ଅଧାଗୁଟିକୁ ।

—ଦିନଯାକରେ ଅଧାଗୁଟିଏ ! ଏଥିରେ ଗୁଡିଏ ଔଷଧ ଲେଖା ଅଛି, ସବୁଯାକ ଦିନରେ ଦୁଇ ତିନିଥର କରି । କେଉଁଟା ଦିନରେ ଅଧ-ଗୁଟିଏ ଖାଉଚ ତମେ ?

—ଭେଜାଣି । ହେଇଥିବ ସେଇଥିରୁ କୋଉ ଗୋଟାଏ । ଅଧ-ଘୁମୁରୁ କରି ଖାଉଚ ତ ନିତି !

ଶେଷରେ ଦ୍ୱିପ୍ରହର ଖବରରେ ସବୁ ଭାବ-କରୁଣା ବିବର୍ଜିତ ହୋଇ ଘରେ ପହଞ୍ଚିଲା ବେଳେ ସୁଚିତା ନିଜ ଫଟୋ କଥା ଭୁଲି ଯାଇଥିଲେ, ନିତ୍ୟ ଅଭ୍ୟସ୍ତ ହସ୍‌ପିଟାଲର ଡିସ୍‌ଇନ୍‌ଫେକ୍‌ଟାଣ୍ଟର ଗନ୍ଧ ପରି ।

ସନ୍ଧ୍ୟାବେଳେ ଚା' ଖାଉ ଖାଉ ରାଜୀବ ବାବୁ ହିଁ ଆଗ କଥା ଉଠାଇଲେ—ପାସ୍‌ପୋର୍ଟ ସାଇଜ୍ ଫଟୋ ଉଠାଇଲ ? ଡେଟ୍ ଗୁଲିଯିବ ଏପ୍ଲାଏ କରିବାର···

ସୁଚିତା ଅଧା ଚା' କପ୍ ରଖି ଯାଇ ଫଟୋ ନେଇ ଆସିଲେ ଓ ରାଜୀବ ବାବୁ ଦେଖି କିଛି ମତାମତ ଦେବା ଆଗରୁ କହି ପକାଇଲେ—ଦେଖିଲ କି କଦର୍ଯ୍ୟ ହୋଇଛି ଫଟୋଟା । ଏ ଫଟୋ କେମିତି ମୁଁ ଦେବି ସେଇ ଏପ୍ଲିକେଶନ୍ ସଙ୍ଗେ, ଯେମିତି ଠାକୁରମୁହାଁ ବୁଢ଼ୀ ପରି ତ ଦିଶୁଛି ।

ରାଜୀବ ବାବୁ କିଛି ସମୟ ଫଟୋଟିକୁ ନିରୀକ୍ଷଣ କଲାପରେ କହିଲେ—ଏତେ ଗମ୍ଭୀର ମୁହଁ କାହିଁକି କରିଥିଲ, ଇମର୍ଜେନ୍‌ସି ଅପରେ-ଶନ୍ କରୁଥିଲା ପରି । ହସିଲ ନି ଟିକେ ।

ଉତ୍ତରରେ ସୁଚିତା ଅକାରଣରେ ଗୁଡ଼ାଏ ହସି ପକାଇଲେ, —ଏକୁଟିଆ ଫଟୋ ଉଠାଇବାର ଅଭ୍ୟାସ ନାହିଁ କି ନା ବହୁତ ଦିନୁ, ବଡ଼ ନର୍‌ଭସ୍ ଲାଗୁଥିଲା ମ ।

ତା'ପରେ ସେ ନିଜ ଫଟୋକୁ ଅନେକ ବେଳ ନିଠେଇ ଦେଖିଲେ ଓ ସେଦିନ ରାତି ସୁଦ୍ଧା ଆହୁରି କେତେକ ବନ୍ଧୁ ତଥା ସହକର୍ମୀଙ୍କୁ ଦେଖାଇଲେ—ଏପ୍ଲିକେଶନ୍ ଫର୍ମ ପାଇଁ ବାଧ୍ୟ ହୋଇ ଉଠାଇଲି ଯେ, ଦେଖନ୍ତୁ ତ କି ବାଜେ ଉଠିଛି ।

ଯଦୁ ବାବୁ କହିଲେ—କୋଉଠି ଉଠେଇଲେ ? ହୀରାପାନ୍ନାରେ ? ସେ କେଉଁରୀଟା ଜମା ଉଠେଇ ଜାଣେ ନି, ନା ଲାଇଟ୍ ଏଫେକ୍‌ଟ ଦିଏ, ନା ଟେକ୍‌ନିକ କିଛି ଜାଣେ···

ଓ ତାଙ୍କ ସ୍ତ୍ରୀ—ଆପଣ ଆଉ ଟିକଏ କଡ଼ରୁ ଉଠେଇବେ, ଠିକ୍ ଏଙ୍ଗ୍‌ଲ୍ ହେଲ୍ ନା।

ଯୁବତୀ ନର୍ସ—ମାଡ଼ାମ୍, ଯାହା କହନ୍ତୁ ଭଲ ଉଠିଛି ଫଟୋଟା, ଖାଲି ଟିକଏ ଆପଣ ହସିଥାଆନ୍ତେ ଯଦି···

ଦୁଇ ଛଅଦିନ ପରେ ସୁଚେତା ପୁଣି ଷ୍ଟୁଡ଼ିଓ ସାମ୍ନାରେ ଓହ୍ଲାଇଲେ, ଏଥର ହାସପାତାଲ ନୁହେଁ, ମାଲ୍‌କମଲ୍ ଆଗରେ। ଫର୍ମ ପାଇଁ ପ୍ରଥମ ଫଟୋଟି ଚଳିବ ନାହିଁ ବୋଲି ସେ ସ୍ଥିର କରି ସାରିଥିଲେ। କିନ୍ତୁ ତା' ପରଠୁ ପ୍ରତିଦିନ ସକାଳୁ ଉଠିଲେ ଘରଚଳିତ କାମର ତାଗିଦା ଓ ସଞ୍ଜ ବେଳକୁ ଦିନକର କ୍ଳାନ୍ତିରେ ଆଉ ଫଟୋ ଉଠା ହୁଏନି। ଶେଷକୁ ଆଜି ସକାଳେ ରାଜୀବ ବାବୁ ଦାଢ଼ି ଖିଅର ହେଉ ହେଉ କହିଲେ—ଆଉ କେତେଟା ଦିନ ରହିଲା ଲଷ୍ଟଡେଟ୍ ପାଇଁ, ଫଟୋଟାରେ କ'ଣ ଅଛି ? ଆଉ ଟିଏ ଦିନ ଡେରିହେବ କ'ଣ ସବୁଦିନ ରହନ୍ତା ନା କ'ଣ ? ପିଲାଟୁଆ ହେଲେ, ପୁଣି ତମର କାମ ଭିଡ଼—।

ସୁଚେତା ହସ୍‌ପିଟାଲ ଯିବା ବାଟରେ ଷ୍ଟୁଡ଼ିଓଟିଁ ଓହ୍ଲାଇଛନ୍ତି। ନିଜର ହକ୍ ପାଉଣା ଛାଡ଼ି ସେ ମାନେନବେ କାହିଁକି ଶସ୍ତା ଜିନିଷଟାକୁ ? ଆଜି ରାଜୀବ ବାବୁଙ୍କଠୁ ନେଇ ସମସ୍ତେ ଭାବୁଛନ୍ତି ସତେ ଯେମିତି ସେ ଗୋଟେ କଥାଟାକୁ ଅଯଥା ଗୁରୁତ୍ୱ ଦେଉଛନ୍ତି। କେତେବେଳେ କେମିତି ତାଙ୍କ ଆପଣାର ସଉକଟିଏ କି ଦାବୀଟିଏକୁ ତାଙ୍କ ଆଖପାଖର ଲୋକେ ଗୁରୁତ୍ୱ ନ ଦେବା କଥାଟାରେ ହିଁ ତାଙ୍କୁ କେମିତି ମନ ଖରାପ ଲାଗୁଥିଲା।

ଦର୍ପଣ ସାମ୍ନାରେ ଏଥର କିଂଚିତ ସ୍ୱସ୍ତି ହାତରେ ନିଜକୁ ସଜାଡ଼ି ନେଇ ସୁଚେତା ତିନି ଗୋଡ଼ିଆ ଡେଙ୍ଗା ଡେଙ୍ଗା କ୍ୟାମେରା ଆଡ଼େ ମୁହଁ କରିଥିବା ଚଉକିରେ ବସିଲେ ଓ ଦରକାରୀ ନିର୍ଦ୍ଦେଶମାନ ଦେଲେ। —ହଁ ପାସପୋର୍ଟ ଉଠିବ, ଅଳ୍ପ ଟିକଏ କଡ଼ରୁ ଉଠାଇବେ, ଏକଦମ ସାମ୍ନାରୁ ମୋର ଭଲ ଉଠେନି। ତେବେ ବେଶି ଏଙ୍ଗୁଲର୍ ଯେମିତି ମୁହଁଟା ନ ଦିଶେ—ମାନେ···।

କ୍ୟାମେରା ଏଡ଼୍‌ଜଷ୍ଟ କରାଯାଉ ଯାଉ ପୁଣି କହିଲେ—ଯଷ୍ଟ ଏ ମୋମେଣ୍ଟ, ଟିକିଏ ଦେଖିବେ ଯେମିତି ନହାତ ସେଲ୍‌ଫ-କନ୍‌ସସ୍‌ ନ ହିଅନ୍ତି।

ସୁଚରିତା କିନ୍ତୁ ଦେଖିଲେ ଫଟୋଗ୍ରାଫର ତାଙ୍କୁ ପ୍ରାୟ ଧରାପାଣ୍ଡାର ହିଁ ସେଇ ପୋଜ୍‌ରେ ବସିବାକୁ କହି ସେଇ ଦିଗକୁ ହିଁ କ୍ୟାମେରା ବାଗେଇଲା, ଠିକ୍‌ ସେମିତି ତା' ନିଜ ଡାହାଣ ହାତ ପାପୁଲିକୁ ଦେଖାଇ କହିଲା ଏଇଠିକି ଅନାନ୍ତୁ, ବାସ୍‌, ବାସ୍‌, ଟିକିଏ ଉପରକୁ ମୁହଁ, ସ୍ମାଇଲ୍‌ ପ୍ଲିଜ୍‌, ବାସ୍‌ ରେଡ଼ି—

କ୍ୟାମେରା କ୍ଲିକ୍‌ କଲାବେଳକୁ ସୁଚରିତା ଅନୁଭବ କରୁଥିଲେ ତାଙ୍କ ମୁହଁ ସାରାରୁ ହସ ପୋଛି ହୋଇଯାଇଛି ଓ ଓଠଟି କେବଳ ରବର ଷ୍ଟ୍ରିପ୍‌ ପରି ଟାଣି ହୋଇଯାଇଛି ଦୁଇ ଆଡ଼କୁ।

ଷ୍ଟୁଡ଼ିଓରୁ ବାହାରି ଆସିବା ଆଗରୁ ସୁଚରିତା ଦର୍ପଣ ସାମ୍ନାରେ ମୁହଁରୁ ଅଧିକ ମେକପ୍‌ ଟିକିଲ ରୁମାଲ୍‌ରେ ପୋଛି ପକାଇଲେ। — ହସ୍‌ପିଟାଲରେ ଚିହ୍ନା ଗହଳି ପୁରୁଣା ରୂପ ଋହିଆସିଛି ନିଜର। ଭିତର ରୁମ୍‌ରୁ ବାହାରିଲା ବେଳକୁ ଷ୍ଟୁଡ଼ିଓବାଲା କୋଉ ଫଟୋ ତିଆରିରେ ଲାଗିଥିଲା, ଠିଆହୋଇ ପଡ଼ି ରସିଦ ଲେଖୁ ଲେଖୁ କହିଲା—ଫଟୋଟା ଠିକ୍‌ ଉଠିବ ଦେଖିବେ। ମୁଁ ଟଚ୍‌ ଅପ୍‌ କରିଦେବି ଠିକ୍‌!

ସୁଚରିତା କାନ୍ଥ ଦେହରେ କାଚ କବାଟ ଭିତରେ ସଜାହୋଇ ରଖାଯାଇଥିବା ଫଟୋମାନ ଦେଖୁ ଦେଖୁ କହିଲେ—ଟଚ୍‌ଅପ?

ଷ୍ଟୁଡ଼ିଓବାଲା ତାଙ୍କ ପରିଚୟ ଜାଣେ ନିଶ୍ଚୟ, ଅଧିକା ବିନୟରେ କହିଲା—ସେ ବିଷୟରେ ଚିନ୍ତା କରନ୍ତୁ ନା। ପଅରଦିନ ଆଜ୍ଞା ନେଇ-ଯିବେ ଡାକ୍ତରଖାନା ଯିବା ବାଟରେ।

ଏଡ଼ଭାନ୍‌ସ ଟଙ୍କା ଦେଇ ପର୍ସରେ ରସିଦ୍‌ ରଖୁ ରଖୁ ସୁଚରିତାଙ୍କ ଆଖି ପୁଣି ଖୋଜିଗଲା କାନ୍ଥ-କେଶ୍‌ ଭିତରେ ସଜା ଫଟୋ ମାନ ଆଡ଼କୁ— ଛବି ପ୍ରାପ୍ତବୟସ୍କର ଫଟୋରେ ନଜର ପାରୁପର୍ଯ୍ୟନ୍ତ ସୁଦର୍ଶନ ଚେହେରାଟି

ଲୁଚିଦେବାର ଚେଷ୍ଟା, ଆଉ ଫଟୋବାଲା ବି ତା' ଧନ୍ଦା ଜାଣେ—କେମିତି ଚିତ୍ତ ମନ ଭିତରେ ସାଇତା ନିଜ ଛବିଟିକୁ ପ୍ରାଣପଣେ କାଗଜରେ ଉତାରି ଦେଖାଇବେ। ସେଇ ଫଟୋ ଗହଳରେ ନିଜର ପରିଅରିବନ ମିଳିବାକୁ ଥିବା ଫଟୋ କପିଟିରେ ଝଲକଟିଏ ତାଙ୍କୁ ବିଶିଗଲା।

ସୁଚରିତା ବାହାରି ଆସି ଗାଡ଼ିରେ ବସିଲେ। ନିଜ ଗାଡ଼ିରେ ବସି ଚିତ୍ତଥର ଡ୍ରାଇଭରକୁ ନିର୍ଦ୍ଦେଶ ଦେଲାବେଳେ ତାଙ୍କୁ ପରିତୃପ୍ତ ଲାଗେ—ଗତବର୍ଷ କିଣା ନୂଆ ଗାଡ଼ି। ଜୀବନରେ ତାଙ୍କର କ୍ରମପରିବର୍ଦ୍ଧିତ ସାମାଜିକ ସ୍ଥାନ ତାଙ୍କୁ ତୃପ୍ତି ଦିଏ ଓ କାମ କଲାବେଳେ ନିଜ ଶକ୍ତି କି ଧୈର୍ଯ୍ୟ ଉପରେ ଯେତେ ଚାପ ପଡ଼ିଲେ ବି ସେ ସମସ୍ତଙ୍କୁ ବିରକ୍ତିକର ବୋଲି ଭାବନ୍ତି ନାହିଁ—କାରଣ ଅପଚୟର ସମସ୍ତ ହିଁ ସିନା ବିରକ୍ତିକର ହେବା କଥା। ତା'ହେଲେ ବହୁମୂଲ୍ୟ ବୋଲି ମନ ଭିତରେ ସାଇତା ନିଜ ସମ୍ପତ୍ତିକୁ କିଣିଗ୍ରୂଏ ଘୋରି ହେଇଗଲେ ବି କାହିଁକି ଅପଚୟ ହେଇଗଲା ପରି ଲାଗେ, ସରିଯାଉଚ୍ଛି ବୋଲି ବିଶ୍ୱାସ କରିବାକୁ ମନ ଡାକେ ନାହିଁ? ସମସ୍ତ ଗଡ଼ୁ ଗଡ଼ୁ ତାଙ୍କୁ କେବଳ ଅଧିକା କୁଡ଼େଇ ଦେଇ ଯାଉଥିବ, ସେ ଦେବେ ନାହିଁ କିଛି?

ମୁହୂର୍ତ୍ତକରେ ଚିତ୍ତ ଭିତରେ ପବନ ଅଟକି ଗଲା ପରି ତାଙ୍କର ଖିଆଲ ହେଲା—ଅ. ଶ୍ୟ ଏ କଥା ସତ ଯେ ଯାହା କ୍ରମେ ଦେବାକୁ ହୁଏ ଦେଣା ଭାବେ ତାହା ତମ ପାଇଲା ପଦାର୍ଥର ସତ୍ତ୍ୱ ଦେଇ ଦେଲା ପରି।

ଡ୍ରାଇଭର ବିନ୍ଦିସ୍ତ ଥର ପଚାରିଲା—ମା, ହସ୍‌ପିଟାଲ ଯିବା? ତାକୁ ହଁ କରି ସୁଚରିତା ବର୍ତ୍ତମାନର କର୍ମସୂଚୀ ପାଇଁ ପ୍ରସ୍ତୁତ ହେଲେ। ଗତ କେତେଦିନ ଧରି ତାଙ୍କର ହାରପାନ୍ନାର ଫଟୋଗ୍ରାଫର ଉପରେ ଥିବା ବିରକ୍ତି ହଠାତ୍ ଏବେ ଆଉ କାହା ବିଷୟରେ ଶୁଣିଥିବା କଥା ପରି ମନେପଡ଼ିଲା ଓ ଆଶ୍ଚର୍ଯ୍ୟ ଲାଗିଲା। ଆଜ୍ଞ ସେ ଭାବିଲେ—ଆଉ ଟିକିଏ ପରେ ଯେଉଁ ଅକୃତଜ୍ଞ ମୁହଁଙ୍କର ଧାଡ଼ି ମୋ ପାଖକୁ ଲମ୍ବିବେ, ସେମାନେ କିଣ ସତରେ ମୋ ବିରୁଦ୍ଧରେ ଅଭିଯୋଗ, ଅସନ୍ତୋଷ ନେଇ ଫେରୁ-ଥିବେ? ମୋ ନିଷ୍ଠା, ପରିଶ୍ରମ ସତ୍ତ୍ୱେ? ହେଲେ କେଉଁ ମୁହଁରୁ କେତେ

ହସ ଲିଭିଚି, ବା କେଉଁ କୃତ୍ରିମ ହସ କେବେ ପ୍ରାକୃତିକ ହେବା ଉଚିତ ସେ ସବୁ ବିଷୟରେ ମୁଁ କେତେ ବା ମୁଣ୍ଡ ଖେଳେଇ ପାରିବି ? ମୋର କେତେ ଶକ୍ତି ?

ଚଳନ୍ତା ଗାଡ଼ିରୁ ଥରେ ପଛକୁ ବୁଲି ଦୂରରେ ଲିଭି ଯାଉଥିବା ଷ୍ଟୁଡ଼ିଓ ଆଡ଼େ ସୁଚିତା ଅନାଇ ଦେଖିଲେ—ଯାଃ, ଏଡ଼୍‌ଭାନ୍‌ସ ଟଙ୍କାଟା ପାଣିରେ ପଡ଼ିଲା ଜାଣ । କାରଣ ପଅରଦିନ ଫଟୋ ନେବା ପାଇଁ ଆଉ ସେ ଏଠି ଓହ୍ଲାଉ ନାହାନ୍ତି । ଆଜି ହିଁ ଫର୍ମ ପଠାଇବେ ଓ ପ୍ରଥମ ଫଟୋଟି ଚଳିବ—ଆଉ ଦୁଇଦିନ ଅଯଥା ଅପେକ୍ଷା କରିବା ପାଇଁ ତାଙ୍କ ହାତରେ ସମୟ ନାହିଁ ।



# ଟେଢୁ

ଦ୍ୱିପ୍ରହର ଖରାରେ ଏକୁଟିଆ ଝିଅଟି ଠିଆ ହୋଇଥାଏ । ଦାଣ୍ଡ ପାହାଚ ପାଖରେ ଅଳ୍ପ ଟିକିଏ ଛାଇ ଆଡ଼କୁ ଜାକ ହୋଇ ଆସିଥାଏ, ହେଲେ ତା ପୂରା ଦେହକୁ ସେ ଛାଇ ଟିକକ ଘୋଡ଼ଉନଥାଏ ।

ସୁମନ୍ତ ତାକୁ ଦେଖିଲେ, ଆଉ ଦର ଆଉଜା ଝରକା ସେପାଖୁ ପଚାରିଲେ, "କଅଣ ?"

ସେ ସ୍ୱରରେ ଟିକିଏ ଚିଡ଼ାଭାବ ଥାଏ, କାରଣ ଦାଣ୍ଡ କବାଟର କ୍ରମାଗତ ଖଡ଼ ଖଡ଼ ଆବାଜରେ, ଦ୍ୱିପହରର ପତଳା ନିଦଟାକୁ ବିସର୍ଜି ଦେଇ ସେ ଆସିଛନ୍ତି । ଅବଶ୍ୟ ବିଛଣା ଛାଡ଼ି ଉଠିଲାବେଳେ ତାଙ୍କର ମନେ ହେଉଥିଲା ହୁଏତ ଦାସବାବୁଙ୍କ ସ୍ତ୍ରୀ ଆସିଥିବେ । ସୁଏଟରର କାନ୍ଧ ମାରିବା ଶିଖିବା ଲାଗି ସେ ଆସିବେ ବୋଲି କହିଥିଲେ—ତାଙ୍କ ନିଜ କାମରେ ଆସନ୍ତୁ ପଛକେ ଶେଷ ଦ୍ୱିପ୍ରହରର ଘଣ୍ଟାଏ ଅଧେ ସମୟ ଅନ୍ତତଃ ସାଙ୍ଗସୁଖରେ କଟିଯିବ, ଚା କପେ ପିଇବାକୁ ବି ବାହାନା ଟାଏ ମିଳିବ । ଉଠିପଡ଼ି ଆସୁ ଆସୁ ସେ କାନ୍ଥ ସେଲଫର ପର୍ଦ୍ଦା ଟେକି ଘଡ଼ି ଦେଖିନେଇଥିଲେ, ସାଢ଼େ ତିନିଟା । ସ୍କୁ-ବଣୀର ଆସିବା ବେଳ ହୋଇନି, ପୋଷ୍ଟମେନ ଆସି ଚାଲିଯାଇଚି । ପିଲାଏ ଆସୁ ଆସୁ ଆହୁରି ଘଣ୍ଟେ ଦେଢ଼ଘଣ୍ଟା ।

ଝିଅଟି ପାହାଚ ପାଖରୁ ଦୁଇ ପାହୁଣ୍ଡ ଝର୍କା ଆଡ଼କୁ ଆସି ଖରାରେ ହିଁ ହସ ହସ ମୁହଁ କରି ନମସ୍କାର କଲା, ଅତି ବିନମ୍ରରେ କହିଲା—"କିଛି ଜିନିଷ ଆଣିଥିଲି ବାବୁ, ଆପଣଙ୍କ ଲାଗି ।"

ସୁମନ୍ତ ନମସ୍କାରର ପ୍ରତ୍ୟୁତ୍ତରରେ ମୁଣ୍ଡ ଟୁଙ୍ଗାଇ ସେମିତି ଦରଆଉଜା ଝରକାକୁ ଧରି ରହିଗଲେ କ୍ଷଣେ, ଠଉରି କରିବା ଲାଗି ଯେ ସ୍ୱାର ମତଲବ କଣ ଓ କବାଟ ଖୋଲିବେ ନା ବଛଣାକୁ ଫେରି-ଯିବେ । ତାପରେ ସେ ଝାଫି ଦେଇ ସାନ ବାରଣ୍ଡାକୁ ଆସିଲେ ଓ କବାଟ ଖୋଲୁ ଖୋଲୁ ପୁଣି ପଚାରିଲେ, "କଅଣ ?"

ଖୋଲା କବାଟର ଗ୍ଲାଇ ତଳ ପାହାଚଯାଏଁ ଲମ୍ବିଗଲା । ସେଠିକି ଲାଗି ଠିଆ ହୋଇଥିବା ଝିଅଟିର ଗ୍ଲାତଯାଏ ପଡ଼ିଲା । ଝିଅଟି ନାଲି ପ୍ଲାଷ୍ଟିକ୍ ଏଆର୍ ବ୍ୟାଗଟିଏ କାନ୍ଧରୁ ଓହ୍ଲାଉ ଓହ୍ଲାଉ ମୁହଁରେ ହସ ଟିକକ ବଜାୟ ରଖି ଅନୁନୟର ଭଙ୍ଗୀରେ ସୁମନ୍ତଙ୍କ ମୁହଁକୁ ଅନେଇଥାଏ, ଯଦିଓ ତାର ଦୃଷ୍ଟି ବାରଣ୍ଡାର ଶୀତଳ ଗ୍ଲାଇକୁ ଓ ସେଠି ପଡ଼ିଥିବା ଟିଣ ଚଉକା ଦୁଇଟିକୁ ଗୁଳିଯାଉଥାଏ । ସୁମନ୍ତଙ୍କ ମୁହଁର ପ୍ରଶ୍ନବାଚୀ ଓ ବିରକ୍ତି ପୁଣି ଥରେ ତାଙ୍କ ଓଠରୁ ଫୁଟିବା ପୂର୍ବରୁ ଏଥର ସେ କହିଲା—"ମୁଁ କଲିକତାରୁ ଆସିଛୁ ଦାଦା, ଜଗଦମ୍ବା କେମିକାଲସର କିଛି ଜିନିଷ ନେଇ ଆସିଛୁ । ସୁହାଗର ଜିନିଷ, ଆପଣ ଚାହିଁଲେ ଦେଖେଇବି, ବାଧି କରିବନି ।"

ଏତେବେଳକୁ ସୁମନ୍ତ ଆଉ ବଛଣାକୁ ନ ଫେରିବା କଥା ସ୍ଥିର କରି ସାରିଥିଲେ ଓ ନାଲି ବ୍ୟାଗଟି ତାଙ୍କୁ ଉତ୍ସୁକ କରି ସାରିଥିଲା । ହେଲେ ତାଙ୍କ ଉତ୍ସୁକ ଭାବ ପଦାରେ ନ ପକାଇ ଓ ଝିଅଟିର ଦୋକାନି ହସର ପ୍ରତ୍ୟୁତ୍ତର ନ ଦେବାର ନିଷ୍ପତ୍ତି ନେଇ ସେ ଟିଣ ଚଉକାଟିଏ ଟାଣି ବସିଲେ । ଝିଅଟିର ମଝି ପାହାଚ ଉପରକୁ ଉଠି ଗ୍ଲାଇ ଆଡ଼କୁ ଜାକି ହେଇ ଆସୁଥିବା ହାବଭାବକୁ ଦେଖି ନ ଦେଖିଲା ପରି ପଚାରିଲେ—"କି ଜିନିଷ ? ଏଣୁତେଣୁ କସ୍‌ମେଟିକ୍‌ସ ମୁଁ ପସନ୍ଦ କରେନାହିଁ ।" ଅଚିହ୍ନା ବକାଳୀଙ୍କୁ ଭଗ୍ନ କରିବାକୁ ସେ ଯେ ନ ଶିଖିଛନ୍ତି ନୁହେଁ, ତେବେ ଏମିତି ବସିଲେ ବିପଦ ନାହିଁ, ଆଗ ରାସ୍ତାରେ ଲୋକବାକ ଯାଉଛନ୍ତି ।

—"ତା ତ ମୁଁ ଜାଣିପାରୁଛି ଦାଦା ! ଆପଣଙ୍କୁ ଦେଖିଲେ ବି ଦାଦା ଯେ କେହି ବୁଝିପାରିବ ଆପଣ ବେଶୀ କସ୍‌ମେଟିକ୍‌ସ ବ୍ୟବହାର କରୁ ନ ଥିବେ । ହେଲେ ମୁଁ କେବଳ ସୁହାଗର ଜିନିଷ ଆଣିଛି ଦାଦା । ଅଳତା,

ସିନ୍ଦୁର, ତେଲ—ଏସବୁ କଣ କସ୍‌ମେଟିକ୍‌ସ ? ଏସବୁ ତ ନିତିଦିନିଆ ସୁହାଗର ଜିନିଷ । କାହାର କାମରେ ନଆସେ କହନ୍ତୁ ତ ଦିଦି ?”

ସାବନା ପଡ଼ନ୍ତା ଝିଅଟିଏ । କେତେ ବୟସ ହେବ ? ବାଇଶ ତେଇଶ, ନା ଚବିଶ ପଚିଶ ? ଅଳ୍ପ ଲମ୍ବ ହାଡ଼ୁଆ ମୁହଁରେ ବାରମ୍ବାର ଝାଳ ପୋଛୁଥିବାରୁ ଇ କେତେବେଳେ ଲଗା ଯାଇଥିବା ପାଉଡ଼ର କି କଅଁଣ ଗୁଡ଼ି ଗୁଡ଼ି ଦିଶୁଛି । ମୁଣ୍ଡବାଳ ଆଉ ସୁନ୍ଦର ଅଳ୍ପର ଦିଶୁଛି ସକାଳୁ କୁଣ୍ଡେଇଥିବ କି କଣ । ପିଠି ପାଖ ବେକ ଉପରେ ଖଞ୍ଜା ଖୋଷାଟିଏ, ସତ ବାଳ କି ନକଲି କେଜାଣି । ସାଦା ଗୋଲାପୀ ରଙ୍ଗର ଶାଢ଼ୀ ବ୍ଲାଉଜ୍, ବିମ୍ନାତ ସଯତ୍ନ ବେଶବାସ, ମୁହଁରେ ଆତୁର ବିମ୍ନାତ ବିଶ୍ୱସ୍ତ ଭଙ୍ଗୀ ।

ପାହାଚ ଉପରେ ବାରଣ୍ଡା ଧାରରେ ତା ନାଲି ବ୍ୟାଗ୍‌ଟି ଥୁଆ-ଯାଇସାରିଥିଲା ଓ ରୁମାଲରେ ଝାଡ଼ି ଗଲା ପରେ ତା ଲମ୍ବ ଜଙ୍ଘରେ ଟେଣା-ଯାଇଥିଲା ।

ଗୋଟି ଗୋଟି କରି ସ୍ନୋ ଶିଶି, ପାଉଡ଼ର ଡବା, ସିନ୍ଦୁର କଜ୍ଜଳର ପ୍ଲାଷ୍ଟିକ୍ ଫରୁଆ କାଢ଼ି ରଖିଲା ସେ ବାରଣ୍ଡା ଧାରରେ । ଇତି ମଧ୍ୟରେ ଝିଅଟି ଉପର ପାହାଚରେ ବସି ପଡ଼ିଥାଏ ଓ ପୁଣି ଦେହକୁ ତାର ଏଥର ଟିକିଏ ଡାଉଥାଏ ଜିନିଷଗୁଡ଼ିକର ଗୋଟି ଗୋଟି କରି ପରିଚୟ ଓ ବିଜ୍ଞାପନ ଦେଉଥାଏ । ପ୍ରତି ବାକ୍ୟର ଆରମ୍ଭ ବା ଶେଷ, ଅଥବା ଉଭୟ ସ୍ଥାନରେ ‘ଦିଦି’ ପଦ ଯୋଡ଼ି । ଯଥା—ଦିଦି ଏଇ ଦେଖନ୍ତୁ ଦିଦି ଚନ୍ଦ୍ରପଳାଶ ଅଳତା । ଅଳତା ତ ଦିଦି ଆପଣ ଅନେକ ବ୍ୟବହାର କରିଥିବେ, କିନ୍ତୁ ଏଇଟି ବ୍ୟବହାର କରି ଆପଣ ଥରେ ଦେଖନ୍ତୁ ଦିଦି । ଆଉ ଦିଦି ଏଇ ସିନ୍ଦୁର—ସିମନ୍ତିନୀ ସିନ୍ଦୁର । ବଜାରରେ ଆପଣ ଏ ଜିନିଷ ପାଇବେନି ଦିଦି ।

ସୁମତି ହାତରେ ଅଳତା ଶିଶି ନେଇ ପରଖୁଛନ୍ତି । କେତେ ମିଠା କଥା ଶିଖିଛି ଦେଖ । ଏ କଥାଗୁଡ଼ିକ ତ କିଏ ସବୁ ଶିଖାଉ ଥିବେ ନା ତା କଥା ସେମିତି କେଜାଣି । ଚେହେରା ଦେଖିଲେ କିଏ ଭାବିବ ସତେ କି ଭଦ୍ରଘରର ଝିଅ !

ଅଳତା ଶିଶି ତଳେ ଥୋଇଦେଲେ ସୁମନ୍ତ । ଭଦ୍ରଘରର ଝିଅ ନା ଆଉର କିଛୁ ! ଭଦ୍ରଘରର ହେଲେ ଏମିତି ଉଦା ହ'ପଦରେ ଏକୁଟିଆ ଘର ଘର ବୁଲି ଫଇଦା କରୁଥାଆନ୍ତା ! ସୁମନ୍ତ ହାଇ ମାରିଲେ ।

ଶିଶିଟି ଚଟାଣ ନ ଛୁଉଁଣୁ ଝିଅଟି ନିଜ ହାତକୁ ନେଇ କହିଲା--"ରଖିଦେଲ ଯେ ବାବୁ ! ଦେଖନ୍ତୁ ନା, ଖାଲି ଟୋପେ ଲଗାନ୍ତୁ, ଦେଖିବେ କି ଚମକ ତା ରଙ୍ଗରେ ।"

କାଗଜ ଖୋଳରୁ କାଢ଼ି ଶିଶିଟିର ଠିପି ଖୋଲି ବସିଲା । ସୁମନ୍ତ ଅଳସ ଭାବେ ବସି ରହି କହିଲେ—"ଥାଉ, ଥାଉ । ମୋର ଏବେ କାଏ ଅଳତା ଲଗାଉଛି ।"

—"ହଇଅନ୍ତୁ ତ ପାଦଟା ବାବୁ, ଟିକଏ ଲଗେଇ ଦିଏଁ ।"

ସୁମନ୍ତ ଟିକଏ ଥମିଯାଇ ଚୁହିଁଲେ ଝିଅଟିକୁ । ସିଏ ଶ୍ରେଷ୍ଠ ଗିନାଟିରେ ଅଳତା ଢାଳୁଛି ।

—"ଦେଖାନ୍ତୁ ବାବୁ ବାଁ ପାଦଟା ।"

—"ନାଇଁ ନାଇଁ, ଥାଉ । ତମେ କାହିଁକି ମୋ ଗୋଡ଼ରେ ଅଳତା ଲଗେଇବ ।"

—"ହଇଅନ୍ତୁନା ବାବୁ ! ବଡ଼ ଭଉଣୀକୁ ଅଳତା ଟିକଏ ଲଗେଇ ଦେଲେ ସାନ ଭଉଣୀ କଣ ଶ୍ରେଷ୍ଠ ହେଇଯିବ ବାବୁ !"

ସୁମନ୍ତ ଶାଢ଼ୀକୁ ଗୋଇଠି ଉପରକୁ ଟେକି ଗୋଡ଼ ବଢ଼େଇ ଦେଇ ଦେଇ ନିଜ ପାଦକୁ ପରଖି ନେଲେ । ଆଜି ଗୋଇଠି ଘଷି ସଫା କରିଛନ୍ତି, ଯେମିତି ଅଯନା କିଛି ଦିଶୁ ନାହିଁ ।

—"କୋଉଠି ଘର ତମର ? କଲିକତାରୁ ଆସିଚ ଫିରି ?"

ବାଁ ହାତରେ ତାଙ୍କ ପାଦକୁ ଧରି ଡାହାଣ ହାତର ତାର ତୁଳୀଟିରେ ଅଳତାର ବହଳ ଗାର ଟାଣି ଦେଇ ଦେଇ ଝିଅଟି ଉତ୍ତର

ଦେଲା—"ହଁ ବାବୁ । କଲିକତାରେ ଘର । ସ୍କାଉଟ୍ସ ଲାଗି ଏତେ ଦୂର ବିଦେଶରେ ଆସି ବୁଲିବାକୁ ହେଉଛି । ଆଉ କଣ ।"

—"ସ୍କାଉଟ୍ସ ? ଏ କମ୍ପାନୀରେ ସ୍କାଉଟ୍ସ କରିଚ ତମେ ?"

—"ହଁ ବାବୁ !"

—"କେତେ ପାଠ ପଢ଼ିଚ ତମେ ?"

—"ମୁଁ ବାବୁ ଗ୍ରାଜୁଏଟ୍ ବାବୁ !"

—"ଗ୍ରାଜୁଏଟ୍ ! ଏକୁଟିଆ ଆସି ଏତେ ଦୂରରେ ବୁଲୁଛ ଏଠି ?"

—"ନାଇଁ ବାବୁ ଏକୁଟିଆ ନୁହେଁ । ଆମେ କମ୍ପାନୀର କୋଡ଼ିଏ ପଚିଶ ଝିଅ ଆସିଚୁ ।"

ତାର ସ୍କାଉଟ୍ସ, ଦରମା ଇତ୍ୟାଦି ବିଷୟରେ ସୁମନ୍ତଙ୍କର ଆଗ୍ରହ ପ୍ରଶ୍ନର ଉତ୍ତର ଦେଇ ଦେଇ ଗୋଟିଏ ପାଦରେ ଲଗାଇ ସାରି ସାବଧାନରେ ପାଦଟିକୁ ତଳେ ଥାପିଦେଇ ଆର ପାଦରେ ହାତ ଦେଲା ଝିଅଟି ।

—"ଆଉ ଆଉ ଆର ପାଦ ମୁଁ ନିଜେ ଲଗେଇଦେବି ।"

—"ଆରେ ବାଆନ୍ତୁ ନା ବାବୁ ! ଘରେ କଣ ମୁଁ ମୋ ମା'କୁ, ବାବାକୁ, ମୋ ଦୈାଦିମାନଙ୍କୁ କେବେ ଅଳତା ଲଗେଇ ଦେଇ ନାଇଁ !"

ଏଥର ଜଣ୍ଟି ନିରେ ଓ ଡାହାଣ ପାଦଟି ବଢ଼େଇ ଦେଇ ସୁମନ୍ତ ପଚାରିଲେ—"ଘରେ ତମର ମା ଅଛନ୍ତି ? ଆଉ କିଏ ସବୁ ଅଛନ୍ତି ?"

—"ଅଛନ୍ତି ବାବୁ ସମସ୍ତେ । ମା, ବାପା, ବି ଭଉଣୀ, ଭାଇ ।"

ସୁମନ୍ତ ମୁହଁକୁ ଟେକବେ ଟେକବେ ହେଇ କହିପକାଇଲେ – "ତମ ବାପ ମା ହଁ କହିଲେ, ଗ୍ରାଜୁଏଟ୍ ଝିଅକୁ ଏଇ ସ୍କାଉଟ୍ସରେ ପଠେଇବାକୁ ?"

ଆଦୌ ଛଳ ନ କଳା ପରି ସେମିତି ଅଳତା ଲଗାଉଥିବା ପାଦରେ ଆଖି ରଖି ଝିଅଟି କହିଲା—"ମନା କଲେ କଣ ହେବ ବାବୁ । ସ୍କାଉଟ୍ସ ମିଳିଲେ ତ !"

ସୁମନ୍ତଙ୍କର କିଛି କହିବାର ନଥିଲା । ସେ ଏଣିକି ଅଳତାରେ ମନ ଦେଲେ—ଆଙ୍ଗୁଠିମାନ ମେଲି କରି ଫାଙ୍କ ଫାଙ୍କ ନ କଲେ ମଝିରେ ଲଗୁଥିବା ଅଳତା ଲେସି ହୋଇଯିବ । ଝିଅଟି ଆପେ ପୁଣି କହିଲା— "ବାବୁ, ଘରେ ତ ରୋଜଗାରିଆ କେହି ନାହାଁନ୍ତି । ପାଠ ଶାଠ ପଢ଼ି କଣ ବସି ବସି ବୁଢ଼ା ବାପର ପେନ୍‌ସନ୍‌ରୁ ଖାଇବା ଉଚିତ୍ ?"

ସ୍ୱରରେ ସଫେଇ ନାହିଁ କି ଆଦର୍ଶର ବଡ଼ିମା ନାହିଁ, ସାଦା ସିଧା କଥା କେବଳ ।

ସୁମନ୍ତ ଅଗତ୍ୟା କହିଲେ—"ସତକଥା । ଦିଅ, ଅଳତା ଶିଶିଟାଏ ଦିଅ । ପୂଜାପର୍ବରେ କାମରେ ଆସିବ ।"

ଗିନାରୁ ବଳକା ଅଳତା ଶିଶିରେ ଢାଳିଦେଇ ଠିପି ବନ୍ଦ କଲା ସିଏ । ଚଟାଣରେ ଆଙ୍ଗୁଠି ପୋଛୁ ପୋଛୁ କହିଲା—"ଗୋଟାଏ କଷ୍ଟ କରିବେ ବାବୁ ମୋ ଲାଗି । ପାଣି ଗିଲାସେ—କେତେବେଳୁ ମାଗିବି ମାଗିବି ହେଉଚି ।"

ନିଜ ଅଳତା ଲଗା ପାଦକୁ ଅନାଉ ଅନାଉ ସୁମନ୍ତ ଉଠି ଠିଆ ହେଲେ, ହସି ହସି କହିଲେ, "ଇଏ ଗୋଟାଏ କିବା କଥା । କହୁନା ।" ଖୋଜିଖୋଜି ଘରୁ ଷ୍ଟିଲ ଗ୍ଲାସ୍‌ଟି ନେଇ ବାହାରି ଆସୁ ଆସୁ ସେ ରହିଗଲେ । ଫେରିଯାଇ ବାସନ ଥାକ ଅଣ୍ଡାଳି ପାଇଗଲେ, ଗୁଣ୍ଡ ସାବୁନ ଡବା କିଣିବା ବେଳେ ଦୋକାନରୁ ମିଳିଥିବା ନେଳୀ ପ୍ଲାଷ୍ଟିକ୍ ଗିଲାସଟି । ସେଇଥିରେ ଗିଲାସେ ପାଣି ଆଉ ସାଥିରେ ମଗରେ କି ପାଣିନେଇ ସେ ବାହାରିଲେ । କଥା କହୁଚି ସିନା ଭଲ ଘର ଝିଅ ପରି, ହେଲେ ବାରିକୁଲି ଜୀବନ, କି ବିଶ୍ୱାସ ତା କଥାରେ ।

ପାଣି ପିଇସାରି ମଗ୍‌ର ପାଣିରେ ଗିଲାସ ଧୋଇ ବଢ଼େଇ ଦେଲା ପରେ ସୁମନ୍ତ ପଚାରିଲେ—"ତମ ନାଁ କଣ ?"

କୃତାର୍ଥକୃତ୍ୟ ହସରେ ସେ ଉତ୍ତର ଦେଲା—"ମୋ ନାଁ ବାବୁ ମୋନା ବିଶ୍ୱାସ ।"

—"ଭଲ ନିଁାଟିଏ ତ ! ହଉ, ଅଳତାର ଦାମ୍ କେତେ ହେଲା କୁହ ।"

ତକ୍ତ ସିନ୍ଦୁର ଫରୁଆଟିଏ ଚଟ୍‌କନ ଉପରେ ଖୋଲୁ ଖୋଲୁ ମୋନା କହିଲା—"ତା ତ ଦଦ ଦେବେ, ତରବର କାହିଁକ ? ଦଅନ୍ତୁ ତ ଦଦ ହାତ ପାପୁଲଟା ।"

—"କଣ ଇଏ ପୁଣି ? ସିନ୍ଦୁର ? ଥାଉ, ମୁଁ ଖାଲି ଅଳତାଟାଏ ନେବ । ଦାମ୍ କହିଲ ?"

—"ଆପଣ ଦଦ ଟିକେ ପାପୁଲଟା ଦେଖାନ୍ତୁନା !"

ହାତ ଟାଣିନେଇ ତାଙ୍କ ପାପୁଲରେ ସିନ୍ଦୁରର ବଡ଼ ଗୋଲେଇ-ଟିଏ ଲଗେଇ ଦେଇ ମୋନା କହିଲା—"ଏଇ ଦେଖନ୍ତୁ । ଟିକଏ ଝଡ଼ିବ ନାଇଁ କ ଏଣେ ତେଣେ ଚହଲିବ ନାଇଁ । ଝାଳରେ ବ ବୋହିଯିବ ନାଇଁ । ଏମିତ ଦାଉ ଦାଉ ଦଶୁଥିବ ଦନସାରା ।"

—"ମୋର କଣ ହେବ ଏବେ ସିନ୍ଦୁର ? ବଡ଼ ଡବାଟାଏ ପଡ଼ି ଅଛି ।"

—"ତା କଣ ମୁଁ ଜାଣେ ନାଇଁ ଦଦ ! ସିନ୍ଦୁର ତ ଥିବ ନଶ୍ଚେ ଆପଣଙ୍କ ପାଖେ......"

ଓଠରେ ମିଠା ହସ ରଖି ମୋନା ବଜ୍ଞାପନ କରିଚାଲିଛି ଜଗଦମ୍ବା କେମିକାଲସ୍‌ର । ଖବର ତେଜ କମି ଆସିଲାଣି । ପିଲାଏ ଆଉ ସ୍ୱାମୀ ଆସିବାକୁ ତଥାପି କଛି ବେଳ ଅଛି । ହେଲେ ଝିଅଟା ସାଙ୍ଗରେ ବେଶୀ ଗପ କଲେ ବପଦ, ତାର ସବୁ ଜନଷରୁ ଗୋଟାଏ ଲେଖାଁ ଧରେଇଲେ ଯାଇ ଛାଡ଼ିବ ଯାହା ଦେଖା ଯାଉଚ ।

—"ହଳଦୀ ଟିକଏ ମିଶେଇ ଦେବେ ଦଦ, ନାରଙ୍ଗୀ ସିନ୍ଦୁର ହେବ, ଆଉ ଲୁଗାଧୁଆ ନେଳୀ ଟିକଏ ଯଦ ମିଶେଇ ଦେବେ ଖଇରଆ ରଙ୍ଗ ଦଶିବ......"

—"ଓଃ-ହୋ ! ହଉ ହେଲା, ସେଇ ସାନ ଫରୁଆରୁ ହଅ ଗୋଟାଏ । କହିଲ ଏଥର କେତେ ହେଲା ଦାମ୍ ।"

—"କହୁଚ ହଦ, ଦେଖାନ୍ତୁ ତ ସୁନ୍ଦାଟା, ଟିକଏ ଲଗେଇ ହଏ ! ଦର୍ପଣରେ ଯାଇ ଦେଖିବେ—"

ତାର ଲମ୍ବିଥିବା ହାତରୁ ପଛକୁ ମୁହଁ ହଟେଇ ନେଇଯାଇ ସୁମନ୍ତ କହିଲେ—"ଥାଉ ଥାଉ, ମୁଁ ପରେ ଲଗେଇବ । ତମେ ଦାମ୍ କହିଲ ।"

ନୂଆ ପ୍ଲାଷ୍ଟିକ୍ ଖୋଳ ଲଗା ଫରୁଆଟିଏ କାଢ଼ୁ କାଢ଼ୁ ମୋନା କହିଲା—"ଆପଣଙ୍କର ହଦ ନୂଆ ବାହା ନା ?"

—"କାହାର ମୋର ? ମୋର ପରି ପୁଅ ଝିଅ ସ୍କୁଲକୁ ଯାଇ-ଛନ୍ତି, ନୂଆ ବାହା ନା ଆଉରି କଣ୍ଠ !"

—"ସତେ ହଦ ! ତେହେରା ଦେଖିଲେ କିଏ ବିଶ୍ୱାସ କରିବ ?"

ମୋନା ମୁହଁକୁ ଅନାଇଲେ ସୁମନ୍ତ । ମନକୁ କହୁଛି କି ଖୋଷା ପାଠ କହୁଚ କେଜାଣି । ହେଲେ ତାଙ୍କ ଗ୍ରନ୍ଥ ଭିତର ଟିକଏ ପୁରି ଆସିଲା ସେ କଥାରେ । କେଡ଼େ ନରେଳା ମୁହଁ, ମିଛ କହିଲା ପରି ମୋଟେ ହଶୁନାଇଁ ।

ଆଉ ଗୋଟିଏ ନୂଆ କାଗଜଖୋଳ ଖୋଲୁ ଖୋଲୁ ସେ କହିଲା —"ମୋ ବଡ଼ ଭଉଣୀର ବି ଏମିତି ତେହେରା ହଦ । ତାକୁ କିନ୍ତୁ ଦେଖିଲେ ମୋ ଭଉଣୀ ବୋଲି ବିଶ୍ୱାସ କରିବେନି, ଖୁବ୍ ଗୋରି, ଆପଣଙ୍କ ପରି ରଙ୍ଗ ହେବ । ତିନଟା ପୁଅଝିଅ ତାର, ମୁଁ ତା ଘରକୁ ଗଲେ ତା ପଡ଼ଶା ଲୋକେ ପଚାରନ୍ତି ମୋତେ ଦେଖେଇ—ଇଏ କଣ ତମ ବଡ଼ ଭଉଣୀ ?"

ମୋନା ହସିଲା । ସୁମନ୍ତ ଭ୍ରୂ କୁଞ୍ଚେଇ କହିଲେ—"ନାଇଁ ତ, ତମେ ତ ଝିଅଟିଏ ପରି ହଶୁଛ, କିଏ କହିଲା ତମକୁ ସେମିତି ?"

କହିଦେଇ ସୁମନ୍ତ ମନେ ମନେ ନିଜକୁ ଆକଟିଲେ । ଏମିତି କଣ ଗପୁଛି ମୁଁ, ସତେକି ଇଏ ମୋ ପଡ଼ୋଶୀ । ମୋନା ଖୁସିରେ ହସିଲା, କହିଲା—"ଆପଣଙ୍କର କଥା ବାବୁ ଲକ୍ଷେ ଟଙ୍କା । ଶୁଣିଲେ ଲାଗୁଚି ମୋ ନିଜ ଲୋକ କିଏ ଆପଣ ।"

ସୁମନ୍ତ ଆଉ ନିଜକୁ ଆକଟି ପାରିଲେ ନାହିଁ । ପଚାରିଲେ— "କୋଉଠି ବାହା ହୋଇଛନ୍ତି ତମ ଭଉଣୀ ?"

—"ସେଇ କଲିକତାରେ ବାବୁ । ସ୍ୱାମୀ ତାର ଅଫିସରେ ଚାକିରି କରେ । ତା ଶଶୁରର ନିଜ ଘର ଅଛି କଲିକତା ପାଖରେ । ମୋ ବାପା ଚାକିରିରେ ଥାଉ ଥାଉ ତାକୁ ବାହା ଦେଇଦେଲେ କି ନା ! ତା ଚେହେରା ବି ତ ସୁନ୍ଦର ।

ଏଥର ସୁମନ୍ତ ପୂର୍ଣ୍ଣଚ୍ଛେଦ ପକେଇବା ପାଇଁ ନିଜକୁ ଦୃଢ଼ କଲେ, କହିଲେ—"ବେଳ ହେଲାଣି, ମୋର କାମ ଅଛି, କେତେ ପଇସା ହେଲା କହିଲ ।"

ମୋନା ଏଥର ଟେଗେଲେଇ ହେଲାପରି କହିଲା—"ଏ ଜିନିଷ ସବୁ ଦେଖିବେ ନାଇଁ ବାବୁ ? ଥରେ ଥରେ ଖାଲି ଦେଖିନିଅନ୍ତୁ !"

ଗମ୍ଭୀର ହୋଇ ସୁମନ୍ତ କହିଲେ—"ଜରୁରୀ ଜିନିଷ ତ କିଣିଲି, ଆଉ କିଛି କିଣିବିନି । ଦେଖିଲେ କଣ ହେବ ?"

ମୋନା ସେମିତି ଟେଗେଲେଇ ଗଳାରେ କହିଲା—"ଆପଣଙ୍କଠୁ ପଇସା ନ ନେଲେ ବି ମୋର ଦୁଃଖ ନାହିଁ ବାବୁ, ଗୁଣ ଅଛି ! ଆପଣଙ୍କ ପରି ଉଦାର ମନର ଲୋକ ମିଳିବେନି ଆଜିକାଲି ଯୁଗରେ ।"

ସୁମନ୍ତଙ୍କ ଓଠକୁ ହସ ଚାଲିଆସିଲା । କେତେ ଛଟକରେ କଥା କହୁଚି ଦେଖ ବଙ୍ଗାଳୀ ଟୋକା ! କହିଲେ—"ତାହେଲେ ପଇସା ନଦିଏ, କଣ କହୁଚ ?"

ମୋନା ହସିଲା କେବଳ ତା ସୁନ୍ଦର ସାଇଜ୍‌କର ଦାନ୍ତ ଦେଖେଇ, ମୁଣ୍ଡକୁ ଗୋଟାଏ ପାଖ କାନ୍ଧଯାଏଁ ବଙ୍କେଇ ଦେଇ। ତାପରେ ହାତର ଶିଶିଟି ବଢ଼ାଇ କହିଲା—"ଏଇଟା ଖାଇ ଥରେ ଦେଖିନଅନ୍ତୁ ଦାଦା। ବିଶୁଦ୍ଧ ଅଁଳା ତେଲ; ବାଳ ପାଇଁ ଅମୃତ ଜାଣିବେ।"

ସୁମନ୍ତ କହିଲେ—"ମୋ ପିଲାଏ ସ୍କୁଲରୁ ଫେରିବେ, ତାଙ୍କ ପାଇଁ ଜଳଖିଆ ତିଆରି କରିବାକୁ ହେବ ମୋତେ। ମୋର ଆଜି ସମୟ ନାହିଁ।"

କହିଲେ, କିନ୍ତୁ ଶିଶିଟି ହାତକୁ ନେଲେ। ମୋନା କହିଲା "ଆପଣଙ୍କ ପିଲାଏ ଦାଦା କନ୍‌ଭେଣ୍ଟ୍ ସ୍କୁଲକୁ ଯାଉଥିବେ ନୁହେଁ ?"

—ହଁ। "ଏ ତେଲ ଦାମ୍ କଣ ଏଗାର ଟଙ୍କା ଲେଖା ହୋଇଚି ? ଏତେଗୁଡ଼ାଏ ଦାମ୍ ?"

—"ଜଡ଼ିବୁଟି ଔଷଧ ପଡ଼ିଚି ଦାଦା, ଶୁଦ୍ଧ ତେଲ। ରହନ୍ତୁ, ଆପଣଙ୍କୁ କମ୍ପାନୀର ତାଲିକା ଦେଖାଉଚି।"

ବ୍ୟାଗ୍ ଭିତରେ କାଗଜ ଖୋଜୁ ଖୋଜୁ ମୋନା କହିଲା—"ମୋ ବଡ଼ ଭଉଣୀର ପୁଅ ବୁବୁନ, ଏଡ଼ିକ ଟିକିଏ ପିଲା।" ବ୍ୟାଗରୁ ହାତ କାଢ଼ି ସେ ଆନୁମାନିକ ଉଚ୍ଚତା ଦେଖାଇଲା, ପୁଣି ବ୍ୟାଗ୍‌ରେ ହାତ ପୁରାଇ କହିଲା—"ଏତେ ଗୁଲାକ୍ କିଆ ଦାଦା। ଆଉ କି ସ୍ମାର୍ଟ ! ମୁଁ ଟୁର୍‌ରେ ବାହାରିଲା ବେଳେ ଜିଦ୍ କରେ ମୋ ସାଙ୍ଗରେ ଆସିବ ବୋଲି।"

ସୁମନ୍ତ ଶିଶିରୁ ଆଖି ଉଠାଇ ତା ମୁହଁକୁ ଚାହିଁଲେ। ମୋନା କାଗଜ ଖୋଜିବା ଭୁଲି କହିଚାଲିଲା—"ମା'ତ ତାକୁ ପ୍ରାୟ ନେଇଆସନ୍ତି ଆମ ଘରକୁ, ଉଃ ! ଦୁଷ୍ଟ ଯେତିକି ବୁଦ୍ଧିଆ ସେତିକି। ମୋ ମା' ଟିକେ ବ୍ୟସ୍ତ ହୁଏ ତ ମୋତେ ଏକୁଟିଆ ଛାଡ଼ିବା ଲାଗି, ବୁବୁନ୍ କହେ— "ମାଉସୀମା, ମୋତେ ସାଙ୍ଗରେ ନେଇଯାଅ, ମୁଁ ବନ୍ଧୁକ ନେଇ ତମ ପାଖେ ପାଖେ ରହିବ। ଡାକୁ ଆସିଲେ...।"

ହାତ ଠାରରେ ଗୁଳ କରି ମୋନା ହସିଲା ବଡ଼େ ।

ସୁମନ୍ତ ପଚ୍ଛରିଲେ—"ତମେ ଥରେ ବାହାରିଲେ କେତେଦିନରେ ଫେର ?"

—"ମାସେ ପଚାଶ ଦିନ ବାବୁ, ଦେଢ଼ମାସ ଦିମାସ ବି ହୋଇଚି ଥରେ ଅଧେ ।"

—"ଡର ଲାଗେନାହିଁ ତମକୁ, ଏକୁଟିଆ ଝିଅ ଘର ଘର ବୁଲ ?"

—"ଅଭ୍ୟାସରେ ପଡ଼ିଗଲାଣି ବାବୁ ।"

—"ଅଭ୍ୟାସରେ ପଡ଼ିଗଲାଣି—ଡରନା ଏକୁଟିଆ ବୁଲିବା ?"

ମୋନା ହସୁ ହସୁ କହିଲା—"ଡର ଆଜିକାଲି ଲାଗେନାହିଁ ବାବୁ । ଆପଣ ଯେମିତି ଭାବୁଛନ୍ତି । ଥରେ ଘରୁ ଗୋଡ଼ କାଢ଼ିଲେ ଆଉ ସେତେ ଡର ଲାଗେନାହିଁ ।"

—"ସତେ ? ଆଉ ଘର ମନେପଡ଼େ ନା ନାହିଁ ?"

—"ମନେ ତ ପଡ଼େ । ହେଲେ ଜାଣନ୍ତି, ଆଜିକାଲି ବେଶୀଦିନ ଘରେ ରହିଗଲେ ବି ଆଉ ଭଲ ଲାଗେନାହିଁ ।"

ସୁମନ୍ତ ତା ମୁହଁକୁ ଅନେଇ ରହିଲେ । ହଠାତ୍ ମନେପଡ଼ିଗଲା ପରି ମୋନା ବ୍ୟାଗ୍‌ର କଡ଼ ଜିପର୍ ଖୋଲି ତାଲିକା କାଗଜ ବାହାର କଲା ।

ଦାମ୍ ତାଲିକାରେ ଆଖି ବୁଲଉ ବୁଲଉ ସୁମନ୍ତ ଭାବୁଥିଲେ— କେମିତି ଲାଗେ କାଲି ପାଇଁ ଚିନ୍ତା ଦୂର କରିବା ଛାଡ଼ିଦେଲେ ? ଅନାଗତର ଭୟକୁ କାବୁ କରିବା ଶିଖିଗଲେ ? କେମିତି ଅନୁଭବ ହୁଏ ଆଜି ରାତିରେ କି ଧରଣର ମସଲା ଦେଇ କି ତରକାରୀ ରାନ୍ଧି ବାଢ଼ି ଖାଇବି ଜଣା ନଥିଲେ ?

ଆଖି ଉଠେଇ ମୋନାକୁ ପଚାରିଲେ—"ଏସବୁ କଣ ଠିକ୍ ଦାମ୍ ? କେବେ ହୋଇନଥିବ ।"

—"କମ୍ପାନୀ ଦାମ୍ ଦାଦା ! କମ୍ପାନୀ ଆମକୁ ତ ଦରମା ଦିଏ ନାହିଁ, କମିଶନ୍ ଦିଏ । ଆପଣ ଯଦି ଠିକ୍ ଭାବୁଛନ୍ତି ଦିଅନ୍ତୁ, ସାନ ଭଉଣୀକି ଦେଉଛନ୍ତି ଭାବି ।"

ସୁମନ୍ତ ଆଖି ନୋଇଁଲେ ତାଲିକାକୁ । ଆଜ କେଉଁ କେଉଁ ଘରକୁ ଯାଇ କେଉଁପରି ମୁହଁମାନଙ୍କୁ ଭେଟିଛି, ଅପମାନ ପାଇଛି କି ସାଙ୍ଗସୁଖ ହୋଇପାରିଛି, କାହାକୁ ଖାତିର୍ ନ କରି ବେପରୁଆ ପସରା ଧରି ବାହାରି ପଡ଼ିଲେ କେମିତି ଲାଗେ ? କାଳିର ଉପରେ ପାଦତଳ ଭୂଇଁରେ ମାଟି କାମୁଡ଼ି ପଡ଼ି ନଥିଲେ କେଉଁପରି ଜୀବନର ଅନୁଭବ ହୁଏ ସତେ ?

ସୁମନ୍ତ କାଗଜରୁ ଆଖି ଉଠାଇଲେ । ମୋନା ମୁହଁକୁ ଅନେଇ କହିଲେ—"ସିନ୍ଦୂର ଫରୁଆଟା ଟଙ୍କାଏ ହେବ । ଆଉ ଏ ଅଁଳା ତେଲ ସାତଟଙ୍କାରୁ ବେଶୀ ହେବନାହିଁ ।"

ଆଉ ଭାବିଲେ—ଅଁଳା ତେଲ ପରି ମୁଁ କଣିବି ନାହିଁ ? ମୋନା ଦାନ୍ତ ନକୁଟି କହିଲା—"ଗରିବ ଭଉଣୀଟିଏ ଦାଦା ! ଆପଣଙ୍କର ମନ ବଡ଼, ଆସିଲାବେଳକୁ ମୁଁ କଣ ସେତିକି ବୁଝିପାରିନାହିଁ ?"

ହଠାତ୍ ସୁମନ୍ତ ପଚାରିଲେ—"ତମେ ମେହେନ୍ଦୀ ରଖନାଇଁ ?"

—"ମେହେନ୍ଦୀ ?"

—"ହଁ, ମାନେ ମଞ୍ଜୁଆତି ଗୁଣ୍ଡ । ମୁଁ ଅନେକଥର ହାତରେ ଲଗେଇବି ବୋଲି ଭାବେ, ହେଲେ କୋଉଠି କିଣିବାକୁ ହୁଏ ଜାଣିପାରେ ନାହିଁ ।"

ମୋନା ଏ କଥାରେ ଖୁବ୍ ତାନେ ହସିଲା ! କହିଲା—"ସତକଥା ଦାଦା, ଆମର ସେଆଡ଼େ ବି ଏବେ ଚଳଣି ନାହିଁ ସେସବୁର । ହେଲେ ଆପଣଙ୍କର ଦରକାର ଯଦି ଆଣିଦେବି ।"

—"କେତେଦିନ ରହିବ ଏଠି ?"

—"ଆଜି ଦୁଇ ତିନିଦିନ । ସ୍ୱାପରେ ବଦଳି ଭିଲାଇ ଯିବୁ ।"

—"ଆଗରୁ ଯାଇଛ ଭିଲାଇକୁ ?"

—"ହଁ ବାବୁ । ତେବେ ଅନେକ ସମୟରେ ଏକଦମ୍ ନୂଆ, ଅଚିହ୍ନା ସହରକୁ ଯିବାକୁ ହୁଏ । କେମିତି ଲାଗେ, କାଲି ସକାଳ କେଉଁ ସହରରେ ପାହିବ ଜଣା ନ ଥିଲେ ?"

ସୁମନ୍ତ ଶୋଇବା ଘରେ ପର୍ସ ଖୋଲି ପଇସା କାଢ଼ୁ କାଢ଼ୁ ନିଶ୍ଚୟ କଲେ, ଟଙ୍କାଏ ଆଠଣା କାଟିବ, ବେଶୀ ନୁହେଁ । କରୁ ବଗୁଆ ଦି' ପଇସା ଲାଭ, କିଛି ନ ହେଲେ ବି ପଦାରଟା କଟିଲା ତ ଗୋଟେ ରକମ ।

ବାହାରକୁ ବେଳେ ଗ୍ରାବଲେ ମଞ୍ଜୁ ଆଣି ଆଣିବାକୁ କହିବେ, କିନ୍ତୁ କହିଦେବେ ସଫା—ଏଥର କିନ୍ତୁ ମେହେଫିଲ ଛଡ଼ା ଆଉ କିଛି କିଣିବ ନାହିଁ । ଆଣିବୁ କି ନାହିଁ—ତୋର ଇଚ୍ଛା ।

ଭିତର ପାଖ ବାରଣ୍ଡାରୁ ବାହାର ବାରଣ୍ଡାକୁ ଯିବା ସାନ ଗଳି ବାଟେ ଠିଁ ସେ ରହିଗଲେ, କାହା ପାଟି ଶୁଭୁଛି ବାହାରେ ? ସେ ଜିଭ କାମୁଡ଼ିଲେ । ହେ ଭଗବାନ, ଘନେଶ ଆସି ଗଲେଣି, ଏତେବେଳ ହେଇ ଗଲାଣି ତାହେଲେ । ପରଦା ଫାଙ୍କରୁ ଦିଶୁଛି ତାଙ୍କ ତମ ତମ ମୁହଁ, ବାରଣ୍ଡାର ଶିଶି ଡବା ଧାଡ଼ିକୁ ଚାଣି ଆଙ୍ଗୁଠି ଦେଖାଇ କଣ କହୁଛନ୍ତି ? ଫେରିବାଲା ନାଁ ଧରିଲେ ଚଢ଼ନ୍ତି । ତାଙ୍କ ଆଗରେ ମୋନାକୁ ଟଙ୍କା ଦେବି ମୁଁ କେମିତି, ନକଲି ଜିନିଷ ଫେରାଅ ବୋଲି କହିବେ ଯଦି ?

ହେଲେ ମୋନାକୁ ଦେଖ, ଡର ଭୟ ଟିକିଏ ବୋଲି ନାହିଁ । ସେମିତି ମିଠା ହସ ହସି କଥା କହୁଚି, ହାତରେ କ ଶିଶି ପିଏ ?

ସୁମନ୍ତ କବାଟ ପାଖକୁ ଯାଇ ପର୍ଦ୍ଦାକୁ ଧରି ଠିଆ ହେଲେ । ଘନେଶ ଭ୍ରୂ କୁଞ୍ଚେଇ ପଚାରିଲେ—"ସ୍ୱାଠୁ ଜିନିଷ କିଣୁଥିଲ ?"

ସେ ଉତ୍ତର ଦେବା ପୂର୍ବରୁ ମୋନା କହିଲା—"କହନ୍ତୁ ଦେଖି, ଭାଇ, ଆମ ଜିନଷ କେମିତିଆ ? ଏଇ ଅତରଟା ଟିକିଏ ଦେଖନ୍ତୁ ନା ଦାଦା !"

ଶମ୍ଭୁ ଟାଏ ଭୂକାରେ ଅତର ଟିକିଏ ତାଙ୍କ ଅନାୟାସରେ ସେ ଘନେଶ ବାବୁଙ୍କ ବାଁ ହାତଟି ଟାଣିନେଇ ପାପୁଲି ପିଠିରେ ଘସିଦେଲା, କହିଲା—"ଟିକିଏ ଶୁଙ୍ଘି କହିଲେ, ଇଏ ହେନା ଅତର ବୁଝେ, କେମିତିଆ ?"

ଘନେଶ ସାମାନ୍ୟ ଇତସ୍ତତଃ ହେଲେ, କୁଞ୍ଚା ଭ୍ରୁରୁ ସତ୍ତ୍ୱେ ମୁହଁ ନରମି ଆସିଲା, ହାତକୁ ନାକ ପାଖକୁ ନେଲେ, କହିଲେ—"ହୁଁଃ"

ସୁମନ୍ତ ଅନେଇଲେ ମୋନା ମୁହଁକୁ । କହୁ ନ ଜାଣିଲା ସାବନା ଗୋଲଆ ପିଲାଳିଆ ମୁହଁଟିରେ ଆପି ହେଇଯାଇଛି ସତେକି ଏକାଭଳି ଅନ୍ୟ ମୁହଁଟିଏ—ମୁରୁ ମୁରୁ ଓଠ ଚପା ହସ, ଆଖିରେ ଜାଣିସିଆଣ କୋହୁଆ ଗୃହିଣୀ, ଦୁଇ ହାତରେ ନାଲି ବ୍ୟାଗଟି ଧରି ଝୁଲଉଛି ଏ ପାଖରୁ ସେପାଖ । ଗୋଟିଏ ଭ୍ରୁ ଅଳ୍ପ ଟେକି କହିଲା—"ଖାଣ୍ଟି ହେନା ଅତର ଦାଦା ! ମନା କରିପାରିବେ ନାଇଁ, ରଖିବାକୁ ହେବ ଗୋଟାଏ ଶିଶି ।"

କଣ ଏ ଅବହ୍ଲା ଝିଅଟି ? ଟିକିଏ ଆଗରୁ ଦୁଃଖସୁଖ ହେଉଥିଲା, ଦୟା ଆସୁଥିଲା ବଗୁଲିଟିଏ ବୋଲି । ଏବେ ଫୁଲେଇ ହେଉଛି ବନ୍ଧୁଙ୍କ ପରି, ଟିକିଏ ଆଗର ସବୁଗର ଭାବଟି ତାର ସତେକି ଉଭେଇ ଯାଇଛି ଶୂନ୍ୟରେ । ଆଉ ସ୍ୱାମୀ ! ତାଙ୍କ ମୁହଁକୁ ଦେଖ । ଲମ୍ବି ଆସୁଥିବା ହାତରୁ ଅତର ଶିଶି ନେବେ କି ନାହିଁ ଦୋଦୋ ପାଞ୍ଚ ହେଉ ହେଉ ଶିଶିରୁ ହାତ ବାଟ ଦେଇ ଦୃଷ୍ଟି ଖୁଲିଯାଇ ଲଖି ଲଖି ଯାଉଛି ତାର ଲୁଗା ଖସିଯାଇ-ଥିବା ଗୋଟିଏ ପାଖ ଗୁଣ୍ଡିଟି ।

ଦୃଷ୍ଟି ଫେରି ସ୍ତ୍ରୀଙ୍କ ସିଧାସଳଖ ଦୃଷ୍ଟିରେ ନ ମିଶୁଣୁ ଭୂଇଁକୁ ଫେରିଗଲା । କହିଲେ—"ଦେଖ, ଯାହା କଣୁଛ କଣ" ଆଉ ମଟ୍ ମଟ୍ ଭିତରକୁ ଖୁଲିଗଲେ ।

ସୁମନ୍ତ ନାକ ଫୁଲେଇ ଟଙ୍କା ବଢ଼େଇ ଦେଲେ । ଇଚ୍ଛା କଲେ ଜନିଷ ସବୁ ଏବେ ଫେରେଇ ଦେଇ ପାରନ୍ତି । ହେଲେ ମୁଁ ଗୋଟାଏ ଛୋଟେ ଈର୍ଷା କରିବ ନା ଜଣ ?

ମୋନା ଏଥର ପିଲଳିଆ ମିଠା ହସରେ କହିଲା—"ଅଡର ଶିଶିଟାଏ ନଅନ୍ତୁ ନା ବାବା!" ସୁମନ୍ତ ତା ମୁହଁକୁ ଅନେଇଲେ ସିଧା, ତାଙ୍କ ଆଶ୍ଚର୍ଯ୍ୟ କ ଘୃଣାକୁ ଲୁଚେଇବାର କୌଣସି ଚେଷ୍ଟା ନ କରି । ଫେରି ପଡ଼ୁ ପଡ଼ୁ କହିଲେ—"ନା ।" ଆଉ ଦୁଆର ପର୍ଦ୍ଦାଟା ଭଲକରି ଟାଣିଦେଲେ ।

ରାତିରେ ଖାଇଲାବେଳେ ସୁମନ୍ତ କହିଲେ—"କେଡ଼େ ଅଲାଜୁକା ଝିଅମ ଏମାନେ ! ବିଷ ଟିକିଏ ମିଳେନାଇଁ ଏମାନଙ୍କୁ ?"

ଘନେଶ ଖାଉ ଖାଉ ପଚାରିଲେ—'କାହାକୁ ?"

—"ସେଇ ଯୋଉ ଆସିଥିଲା ଆଜ ଅତର ବିକ ।"

—"କଣୁଥିଲ କାହିଁକି ତାଠୁ ? କେତେଥର ମନା କରିଚ—"

—"ଜାଣିଚ, ହେଲେ ସାଧାରଣ ଫେରିବାଲା ତ ନୁହେଁ ସିଏ । ପାଠଶାଠ ପଢ଼ିଚି, ଭଦ୍ର ସୁନ୍ଦର କଥାବାର୍ତ୍ତା ।"

ଖାଇସାରି ଉଠି ଯାଉ ଯାଉ ଘନେଶ କହିଲେ—"ଛାଡ଼ିଲ ତା କଥା । ବାଜେ ମାଇକନା ସବୁ । ତମେ କୁଆଉୁ ଚିହ୍ନିବ ସେଗୁଡ଼ାଙ୍କୁ ।"

—"ତମେ ଦେଖୁ ଦେଖୁ ଚିହ୍ନି ପକେଇଲ ?"

—"ଚିହ୍ନିବିନ ? ତମପରି ମୁଁ ଘର ଭିତରେ ବସି ରହୁଚି କି ? ବଜାରର ବାରବୁଲା ଲୋକଙ୍କୁ ମୁଁ ଚିହ୍ନିବିନ ତ କଣ ତମେ ଚିହ୍ନିବ ?"

ସୁମନ୍ତ ଚୁପ୍ ରହିଲେ । ହେଲେ ରାତିରେ ଲାଇଟ୍ ଲିଭିଲା ପରେ, ଘନେଶ ଶୋଇଗଲା ପରେ ବି ସେ ଭାବି ହେଉଥିଲେ । ମୁଁ ଚିହ୍ନିନାଇଁ ତମେ ବେଶୀ ଚିହ୍ନିଚ ? ତମଲାଗି ତ ସବୁ ସ୍ତ୍ରୀ ଏପାଖ ନ ହେଲେ ସେପାଖ —ଘର ଭିତରର ନ ହେଲେ ବଜାରର । ମୋନା ବୁବୁନକୁ ଗେଲକରେ,

ତା ମାକୁ ଝୁ ରହୁଏ ତମେ ଜାଣିଚ ? ତମ ସ୍ତ୍ରୀର ବି ବେଳେ ବେଳେ ଧି ଧି ହପଡରେ ପସଗ ମୁଣ୍ଡେଇ ବୁଲବାକୁ ମନହୁଏ; ତମେ ଅନୁମାନ କରଚ ? ତା' ବୋଲି ତମ କଥାରେ ମୁଁ ଦୁଃଖ କରୁନାଇଁ କି ତମ ଦୃଷ୍ଟିରେ ବି ନୁହେଁ । ତମ ଆଖିକୁ ଯେତିକି ଦିଶିଲ, ତମେ ସେତିକରେ ବିଶ୍ୱାସ କରିଛ, ତମର ଦୋଷ କଣ ? ମୋତେ ଖାଲି ମୋନା ଲାଗି ବାଧୁଛୁ । ଯେତିକବେଳେ ମୁଁ ତା ସହିତ ବସିଲ, ଯେତିକ କଥା ତାର ଶୁଣିଲ, ସେତିକବେଳ ପାଇଁ ହେଉ ପଛେ ସ୍ନେହରେ ବିଶ୍ୱାସରେ କଣ ତାକୁ ନେଇନାଇଁ ? ତାର ଭଲ ଗୃହୁଁନାଇଁ ? ଗୋଟାଏ ମୁହୂର୍ତ୍ତ ଲାଗି ମୋ ସଂସାରରେ ନଜର ନ ପକାଇ ଥିଲେ, ଏତେ ଖୋଲାଖୋଲି ଅକୃତଜ୍ଞ ନ ହେଇଥିଲେ କଣ ଚଳିନଥାନ୍ତା ?

ରାତିରେ ସେ ସ୍ୱପ୍ନ ଦେଖିଲେ ଗୃହଆଡ଼େ ପାଣି ଭିତରେ ଟାପୁଟିଏ ଉପରେ ସେ ଛିଡ଼ା ହେଇଛନ୍ତି । ସେପାଖେ କୋଉଠି କେଜାଣି ମୋନା ଠିଆ ହେଇଚି, ହାକଳରେ ରଡ଼ି ଛାଡ଼ୁଚୁ ଖସିପଡ଼ିବ ବୋଲି ବହିଯିବ ବୋଲି ପାଣି ସୁଅରେ, ତାଙ୍କୁଇ ଡାକୁ ଛି ଦିଦି ! ହାତ ବଢ଼ାଇଲ ମାତ୍ରେ ଜାବୁଡ଼ି ଧରୁଚି ହାତ, ଆଉ ପାଦେ ବୋଲି ମାଟିରେ ତାଙ୍କ ଗୋଡ଼ ଟଳ ମଳ ହେଉଚି । ଛାଡ଼ିଦେ ମୋନା ଛାଡ଼ିଦେ । ଆଉ ଟିକିଏ ଜୋର୍‌ରେ ଧରିବୁ ଯଦି ମୁଁ ଖସିପଡ଼ିବ ଅଥଳ ଖାଇରେ ।

ଦିଦିନ ପରେ, ଶନିବାର ଥାଏ ବୋଲି ପିଲାମାନେ ଶୀଘ୍ର ଫେରି ଆସିଥାନ୍ତି । ସୁମତି ବ୍ୟସ୍ତ ଥାନ୍ତି ସେମାନଙ୍କ ଜଞ୍ଜାଳରେ । ଦାଣ୍ଡ କବାଟର ଖଡ଼ଖଡ଼ରେ ଯାଇ ଦେଖିଲ ବେଳକୁ ମୋନା ।

ଦୁଃସ୍ୱପ୍ନ ସହିତ ମୋନାକୁ ମନରୁ ପ୍ରାୟ ପୋଛି ପକାଇଥିଲେ ସୁମତି । ତାଙ୍କୁ ହସିଲ ନମସ୍କାରର ଅତି ଫିକା ପ୍ରତ୍ୟୁତ୍ତର ପାଇ ବି ମୋନା ସେମିତି ମିଠା ହସି କହିଲ—"ମେହେନ୍ଦୀ ଆଣିଥିଲି ଦିଦି ।"

—"ଓଃ ! ଏମିତି କହି ଦେଇଥିଲି, ପ୍ରକୃତରେ ସେତେ ଦରକାର ନଥିଲ ।"

—"ରଖିବେ ନାହିଁ ବବ୍ଦ ?" କଏ କହିଲା ଏ ମଉଳାଗଲା ମୁହଁ ପିଛ ବୋ'ଲ ?

"ହଉ, ଆଣିଚ ଯଦ ବଅ । କେତେ ଦାମ୍ ? ହଉ, ଆହୁରି ଲଭ ବ' ପଇସା କରିବୁ ଯବ୍ଦ କର ।"

—"ଦୋକାନରୁ କଣି ଆଣିଥିଲି ବବ୍ଦ ପନ୍ଦର ପଇସାର । ଏଇ ବାଟରେ ଯିବାର ଥିଲାତ ସେପାଖ କଲୋନିକୁ ।"

ଭିତରୁ ପର୍ସ ଖୋଲି ପଇସା କାଢ଼ିଲା ବେଳେ ସୁମନ୍ତ ଭାବୁଥିଲେ —କାହିଁକି ଆସିଲା ପୁଣି ମୋନା । ଯୋଉଥିଲାଗି ଆସୁ, ଶୀଘ୍ର ପଇସା ଦେଇ ସେ ଫେରେଇ ଦେବେ । ଆଉ କଥାଭାଷା ଦୁଃଖସୁଖ ନାଇଁ । ନିଜ ପାଦ ତଳେ କେତେ ବା ମାଟି ଯେ ସେ ଅନ୍ୟ ଜାଗାକୁ ସେତୁ ବାନ୍ଧିବାକୁ ଦମ୍ଭ କରିବେ ?

ପନ୍ଦର ପଇସା ନେଇ ମୋନା ତା ପର୍ସରେ ରଖିଲା । କହିଲା— "ଯାଉଛି ବବ୍ଦ । ଆପଣଙ୍କ କଥା ମନେ ରହିବ । ଏତେ ଆଦର କିଏ ଆମକୁ ସମସ୍ତଙ୍କଠୁ ମିଳେ, ନା ଆମକୁ ବସାଇ କିଏ ଆମ କଥା ଶୁଣେ !"

ଖରାରେ କୁହୁଡ଼ି ପରି ଅଦୃଶ୍ୟ ହୋଇ ଯାଉଥିଲା ମୋନା । ତାକୁ ରୋକିବା କୋଉଥିଲାଗି ? ଗପସପ ଟିକିଏ କରି ହୋଇଥାନ୍ତା, ଘରକୁ ଗଲେ ତୋ ମା'ଙ୍କୁ ନମସ୍କାର ଦେବୁ, ପୁତୁରାକୁ ଚୁମା ଦେଇଦେବୁ ମୋ ପାଇଁ ବୋଲି କରିପାରି ଥାଆନ୍ତି । ହେଲେ ପାନେଶ ଆସି ପହଞ୍ଚିବେ ଏଣିକି, ସେତୁ ଭାଙ୍ଗିଯିବ । ତୋ ଉପରେ କାଳେ ରାଗିଥିବ ବୋଲି ମୋନା ତୁ ମୋ ପାଇଁ ଆଠଣାର ମେହେନ୍ଦି ପୁଡ଼ା କିଣିଆଣି ଦେଲୁ, ଆଉ ଏବେ କିଣ ମୋ ନିରୁପାୟ ଅବସ୍ଥା ବୁଝିବୁ ନାହିଁ ? ଆଜ ତୋତେ ବସାଇ ତୋ କଥା ଶୁଣିବାକୁ ମନ କଲି ନାହିଁ ବୋଲି ଛଳ କରିବୁ ?



# ଉର୍ମିଳାଙ୍କ କାନ୍ଦ

ଦିନରେ ସାଧାରଣତଃ ସେ ଥରେ କାନ୍ଦନ୍ତି, କେବେ କେବେ ବା ଦୁଇ ତିନି ଦିନରେ ଥରେ । କାନ୍ଦର ସମୟ କିଛି ନିର୍ଦ୍ଦିଷ୍ଟ ନଥାଏ, କାରଣ ବି ନୁହେଁ । କେଉଁଦିନ ରାତିରେ ଖିଆପିଆ ସାରି ତକିଆରେ ମୁହଁମାଡ଼ି କାନ୍ଦନ୍ତି ତ କେବେ ସକାଳୁ ଅଫିସ ଯିବା ଆଗରୁ ସ୍ୱାମୀ ଦେଖନ୍ତି ଭାତ ବାଢ଼ୁ ବାଢ଼ୁ ଉର୍ମିଳା ଲୁଗାକାନିରେ ଲୁହ ପୋଛୁଚନ୍ତି । କେବେ ଦ୍ୱିପ୍ରହରରେ ଘରେ କେହି ନଥିଲାବେଳେ, ପୁଣି କେଉଁ ଛୁଟିଦିନ ସନ୍ଧ୍ୟାରେ ପିଲାଛୁଆ ପ୍ରିୟଜନ ପରିବେଷ୍ଟିତା ହୋଇ । କେବେ ପୁଣି ସିନେମା ହଲରେ ଅବା ବାପଘରକୁ ଯିବାବେଳେ ଟ୍ରେନରେ ।

କାହାକୁ ଉଦ୍ରକରି ଲୁହଧାର ଆରମ୍ଭ ହୁଏ, ତା’ ବି କିଛି ସଠିକ ନଥାଏ । ପୁରୁଣା ଚିଠି ପଢ଼ିବାରୁ, ସ୍ୱାମୀ ଡେରିରେ ଫେରିବାରୁ, ମାସ ଶେଷରେ ପଇସା ନ ଥିବାରୁ, ସିନେମା ଟିକଟ ନ ମିଳିବାରୁ । ଥରେ କାନ୍ଦର ଢେଉ ଆରମ୍ଭ ହୋଇଗଲେ ହେଲା, ତା’ପରେ ଭୁହାକୁ ଭୁହା ଆପେ ମାଡ଼ି ଚାଲିଥାଏ । ସେତିକିବେଳେ ସାରା ଦୁନିଆର ଦୁଃଖ ଶୋକରେ ସେ ବୋଝେଇ ହୋଇପଡ଼ନ୍ତି । ଜୀବନଯାକର ଯେତେକ ହତାଶା, ପାଇ ନଥିବା କଥାମାନ ଧାଡ଼ି ବାନ୍ଧନ୍ତି ତାଙ୍କ ମନଶ୍ଚକ୍ଷୁ ଆଗରେ ।

ତେବେ ସବୁ କାନ୍ଦର ଅନ୍ତ ହୁଏ ଠିକ୍ ସେଇଠି, ସବୁ ରୋଗର ମହୌଷଧି ପରି । ସୁବାସବାବୁ ଦେଖନ୍ତି ତାଙ୍କ କାନ୍ଦ । ପାଖକୁ ଆସି ପିଠି ଥାପୁଡ଼ାନ୍ତି । ନଭୁବା ରୁମାଲ୍ କାଢ଼ି ଗେଲରେ କହନ୍ତି—‘ନାଅ ପୋଛି ପକାଅ, ବହୁତ କାନ୍ଦିଲଣି, ମୋ ରାଣୀଟା ।’ ଅଫିସରୁ ଫେରିଥିଲେ—‘ହେଇ ତ, ପୁଣି କ’ଣ ଗୁଡ଼ାଏ ଭାବି ମନଦୁଃଖ କଲଣି । ଉଠିଲ, ମୁହଁ

ଧୂଅ । ଗରମ ଗୁ’ କପେ ଆଣ, ସାଥ ବଡ଼ିଆ ଅଦା ପକେଇ ।’ ବାସ୍, ଊର୍ମିଳାଙ୍କ କାନ୍ଧ କୁଆଡ଼େ ମିଳେଇଯାଏ । ଗୁ’ ଢଆର କରୁ କରୁ କଥାଟା ଭାବିଲେ ନିଜକୁ ବୋକା ପରି ଲାଗେ । ଚୁପ୍‌ଚାପ୍ ହସି ଦିଅନ୍ତି ବି । କ’ଣ ମୋର ନାହିଁ ଯେ ମୁଁ ଲୁହ ଗଡ଼େଇବି ।

ଦିନେ ଦିନେ କୋଉ ସାଙ୍ଗସାଥି ମେଳରେ ମସଗୁଲ୍ ହୋଇଯାନ୍ତି ସୁବାସବାବୁ ଯେ ରାତି ବାରଟା ବେଳେ ଫେରିବାକୁ ମନେପଡ଼େ । ସେଇ ଦିନ ପୁଣି ହୁଏତ ଟୁନୁର ଛ’ମାସିକ ପରୀକ୍ଷା ରେଜଲଟ୍ ଖରାପ ଆସିଥାଏ । ପିଲାଏ ସାଡ଼େ ନ’ଟାବେଳକୁ ଖାଇ ଶୋଇ ପଡ଼ିଲା ପରଠାରୁ ଊର୍ମିଳା କାନ୍ଦି ଲାଗିଥାନ୍ତି ଯେ ଲାଗିଥାନ୍ତି ଅବିରତ । କ’ଣ ଅଛି ଏ ଜୀବନରେ, କୋଉଥି ପାଇଁ ବଞ୍ଚିବ ମଣିଷ ? ଖାଇବାକୁ ମୁଠାଏ ମିଳୁଚି ଯାହା । ଖୁସି ହେବାକୁ ତ ଗୋଟାଏ କଣ୍ଡୁ ଘଟିବାର ନାହିଁ । ଡ଼ିଅଦିନ ପରି ଦଳଟାଏ ବସି ହୋ-ହଲ୍ଲା ଗୀତ ମଉଜ ଚାଲିଗଲା ଅବା ସବୁଦିନ ଲାଗି, ଆପଣାର ବୋଲି ସୁଖ ଦୁଃଖ ଦେବାକୁ ଭଲ କଏ ଜଣେ ଆଆନ୍ତା ।

ହେଇ ଭିତରେ ଥରେ ଅଧେ ନିଜକୁ କାବୁ କରିବାକୁ ଚେଷ୍ଟା ସେ ନ କରନ୍ତି ବୋଲି ନୁହେଁ, ହେଲେ ନାକ ମୁହଁ ପୋଛୁ ସିନ୍ଦୂର ଲେସିଗଲା କି ବୋଲି ଦର୍ପଣରେ ମୁହଁକୁ ଅନେଇ ଦେଖୁଁ ଦେଖୁଁ ଆଖି ଲାଖିଯାଏ ସେଇଠି—ଇସ୍ କ’ଣ ହେଲଣି ଏ ରୂପ ! ପୁଣି ମାଡ଼ିଆସେ କୋହ । ଏଇ ଦିନାକେତେ ତଳେ ତ, ଚେହେରା ଥିଲା ଯେ ଯୋଡ଼ା ଯୋଡ଼ା ଆଖି ଲାଖି ରହୁଥିଲା ରାସ୍ତାଘାଟରେ ଚାଲିଗଲା ବେଳେ, ଆଜି ସେଇଠି ଦୃଷ୍ଟିମାନ ଉପରଠାଉରିଆ ପହଁରି ଚାଲିଯାଏ । କି ମୂଲ୍ୟ ସିନ୍ଦୂର ଲଗେଇବାରେ, ସଜ ବେଶ ହେବାରେ ?

କେତେବେଳକେ ବାହାରେ ସ୍କୁଟର ରହିବା ଶବ୍ଦ, ପୁଣି କବାଟ ପିଟା ସାଙ୍ଗେ ଡାକ ଶୁଭେ । ନାଲି ଜର ଜର ଆଖି ନେଇ ଊର୍ମିଳା କବାଟ ଖୋଲନ୍ତି । ପ୍ରଶ୍ନ ହୁଏ—“କଣ ଶୋଇଥିଲ ?”

ଠେଲି ଆସେ ଆଉରି କାନ୍ଦ । ବୁଲିପଡ଼ି ଚରବରଟରେ ଚାଲି ଆସୁ ଆସୁ ପୁଣି ପଚରାଯାଏ—“ଖାଇଲଣି ତ ?”

ଉର୍ମିଳା ରୋଷେଇଘରଆଡ଼େ ଯାଉ ଯାଉ ଓଦା ସରସର କାନିଟି ପୁଣି ଥରେ ମୁହଁରେ ମାଡ଼ିଦେଇ କାନ୍ଦି ଉଠନ୍ତି ।

—"ହେ ବୃଦ୍ଧ ଉର୍ମି, ହେଉଛି କାନ୍ଦିଲଣି ପୁଣି ନୁହେଁ ? ଗେଲରେ ପରୁଷିଦେଲ ନା, ନହେଲେ ତମେ ଏକୁଟିଆ କେବେ ଖାଅ, ମୁଁ କ'ଣ ଜାଣିନ ଇଁ ?"

କିଛିବେଳ ଏକତରଫା ସାନ୍ତ୍ୱନା ଶୁଣିଲା ପରେ ମୁହଁଟେକି ଉର୍ମିଳା କହନ୍ତି—"ହଁ ସବୁ ଜାଣିଥିବ ତ, ସେଇଥିଲାଗି ଅଧରାତିରେ ଫେରୁଚ ।"

—"ରାଗିବ ତମେ ମୁଁ ଜାଣିଚି । ଦୋଷ ତ ହେଇଚି, ଯାହା କହି ଗାଳିଦବ ଦିଅ, ହେଲେ କାନ୍ଦିକାଟି ନିଜକୁ କଷ୍ଟ ଦିଅନାଇଁ, ମୋ' ସୁନାଟି !"

କିଛି ସମୟ ପରେ ଦୁହେଁ ଗୋଟିଏ ଥାଳିରେ ଖାଆନ୍ତି । ସୁବାସବାବୁଙ୍କ ବାହୁ ଭିତରେ ଶୋଇ ଉର୍ମିଳା ଭାବନ୍ତି ଅତି ଗୋପନରେ ଅନ୍ଧାରରେ—"ଯାହା ହେଉ, କାନ୍ଦିଲି ବା ଅକାରଣ କେତେ ସମୟ, ଏଇ ଲୁହ ବଳରେ ତ ବାନ୍ଧି ପାରିଚି ମୋ' ସ୍ୱାମୀଟିକୁ । କେତେଜଣ ଭଲା ପାରିଚନ୍ତି ଏମିତି ?"

କାନ୍ଦ ଆହୁରି ଗୁରୁତର ପର୍ଯ୍ୟାୟକୁ ବି ପହଞ୍ଚିଚି ଯେତେବେଳେ ତାଙ୍କ ଅଫିସର ସେଇ ଶେଥା ଧଡ଼ିଆ ଟୋକା ଖଣ୍ଡିକ ସାଙ୍ଗରେ ଦିନାକେତେ ନାଟ ଲଗେଇଲେ, ଲୋକହସା ହେଲେ ଆଉ ମୋତେ ବି କରେଇଲେ । ପ୍ରଥମେ ଦିନାକେତେ ତ କହିଲେ—"କିଏ କହିଲା ଏ ସବୁ ? ତମର କିଛି କାମ ନାଇଁ ଏସବୁ ବାଜେ କଥା ମୁଣ୍ଡରେ ପୂରଉଚ ? ଏଣୁ ତେଣୁ ଲୋକଙ୍କ କଥା ଶୁଣୁଚ ?" ପୁଣି ମିଛ ରାଗ ବି ରାଗିଲେ—"ଛି ଛି, ତମେ ପୁଣି ଏ କଥା ସତ କରିପାରିଲ ? ମୋ' ବିଷୟରେ ଏମିତି କଥା ଭାବିପାରିଲ ? ଭୁଲ ହୁଅ, ମୋ' ରାଣ କହୁଚି, ନହେଲେ ମୁଁ ଖାଇବିନି, ହେଇଟି ଯାଉଚି ।"

କଥା ପୁଣି ଆହୁରି ଖଣ୍ଡେ ଦୂର ଗଡ଼ିଗଲା ପରେ—"ଭୁଲ୍ ହୋଇଚି ଜମି, ଦୋଷ ମାଗୁଚି । ଯାହା ଦଣ୍ଡ ଦେବ ଦିଅ, କାନ ଧରୁଚି ଏଇ ।" ଆଉରି କିଛି କାନ୍ଦ ଶୋକ ଅନଶନ ପରେ—"ମାନୁଚି ମୋ' ପାପର କ୍ଷମା ନାହିଁ । ତଥାପି, ତମେ ମୋଅରି ଜମି ପରି । ଦୋଷ ଧରି ବସିଥିବ ଜୀବନଯାକ, ଚାହିଁବ ନାଇ ମୋ' ମୁହଁକୁ ?"

ଧେଡ଼ଙ୍କ ଟୋକାର ପାଳି ବି ଏହାପରି ବେଶିଦିନ ରହିଲା ନାହିଁ । ଊର୍ମିଳା ଶିବ ମନ୍ଦିରରେ କ୍ଷୀର କଳସୀ ଢ଼ାଳିଲେ । ନିଶ୍ଚିନ୍ତିଆରେ ନିଜକୁ କହିଲେ—'ମିଛଟାରେ କେତେ ଛନିଆଁ ହେଉଥିଲି । ପୁରୁଷ ପିଲା, ଥରେ ଅଧେ କ'ଣ ଅବାଟରେ ଯାଆନ୍ତି ନାହିଁ । ହେଲେ ଜାଣେ ପରା, ମୋ' ଲୁହ ବଳେ ତାଙ୍କୁ ଟାଣି ଆଣିବ, ମୋ' ପାଖକୁ । ନରମ ଛାତିର ମଣିଷ । ମୁଁ ନ ବୁଝିଲେ ଆଉ କିଏ ବୁଝିବ ତାଙ୍କ ଦୁଃଖ ?"

ସୁବାସ ବାବୁଙ୍କର ବି ଦିନ ସମାନ ଯାଏ ନାହିଁ । ପତ୍ନୀଙ୍କ କାନ୍ଦ ପ୍ରତି ତେଣୁ ତାଙ୍କର ଉତ୍ସାହ ଅନୁରାଗ ସମାନ ରହେ ବୋଲି କହିଲେ ସତ ହେବନାହିଁ । ଅନେକ ସମୟରେ ନିଜକୁ ଚିମୁଟି କେଞ୍ଚି କାନ୍ଦୁଣି ସଚେତନ କରିବାକୁ ହୁଏ ତ ଆଉ କେତେବେଳର ଲୁହକୁ ଏବେ ବି ବଡ଼ ଅପ୍ରତ୍ୟାଶିତ ଭାବେ ସାମ୍ନା କରିବାକୁ ହୁଏ ।

ଚଉଠି ରାତିରେ ଊର୍ମିଳା ଆଖିଧାରର ଲୁହ ବୁନ୍ଦାକ ଜୀବନଯାକ ଭୁଲି ହେବ, ନା ସେ ଅନୁଭୂତିର ଆଉ ପୁନରାବୃତ୍ତି ହେବାର ଅଛି ? ତା'ପରେ ଟିନୁ, ଲିନୁ ସଂସାରକୁ ଆସିବା ପରଯାଏଁ ବି ଅଗ୍ନିନଜ ନିଜ ସୁନ୍ଦରୀ ସ୍ତ୍ରୀଙ୍କ ଆଖିରେ ଲୁହଧାର ଦେଖିଲେ ସୁବାସବାବୁଙ୍କ ପାଦତଳୁ ଧରା ଖସିଯାଏ । ଏତେ ଅପଚୟର, ଏଭଳି ଅକାରଣ ଦୁଃଖର ହେତୁ ହେବାର ଦୋଷ ସେ ମୁଣ୍ଡେଇ ପାରିବେ ନାହିଁ ।

ତା'ପରେ ସମୟ ସାଙ୍ଗେ ସାଙ୍ଗେ ତାଙ୍କର ପ୍ରତିକ୍ରିୟା ତଥା ମୁକାବିଲା କରିବାର ବାଗବାଇସ ବି ବଦଳିଲା । କେବେ ହୁଏତ ଖବର-କାଗଜ ପଢ଼ୁ ପଢ଼ୁ ସେ ଲକ୍ଷ୍ୟ କଲେ ଯେ ଊର୍ମିଳା କାନ୍ଦୁଛନ୍ତି, ଭାବନ୍ତି—ବାସ୍, ଏଇ ଖବରଟା ପଢ଼ି ଦିଏ କି ତା'ପରେ ତେଣିକି ଅନେଇବି ।

ପୁଣି ଖବରର ଶେଷାଂଶଟା ପାଇଁ ମଝି ପୃଷ୍ଠାକୁ ଗଲାବେଳକୁ ସମ୍ପାଦକୀୟଟି ଦୃଷ୍ଟି ଲାଗିଯାଏ । ଆଉ ଥରେ ଥରେ ଆଖିପତା ଲାଗି ଆସୁଥାଏ, ନିଦରେ, ଅଣ୍ଟା ପାଖରୁ ଶୁଭେ ସୁଁ ସୁଁ । ସୁବାସବାବୁ ନିଜକୁ ଉଦ୍‌ବୋଧନା ଦିଅନ୍ତି, ପୁଣି ନିଜକୁ କଥା ବି ଦିଅନ୍ତି—ଏଇ ଉଠିଲି, ସାଙ୍କୁଲେଇ ବି ରହି—ଘବୁ ଘବୁ ନିଦ ଜମାଟ ବାନ୍ଧି ଆସେ ।

ଚେତବ ପ୍ରତି ହ୍ରଦନର ସମସ୍ତ ପରିମାପ କମ୍ ବେଶି ହେଉ ପଛକେ, ଶେଷ ପର୍ଯ୍ୟାୟଟି ନିଶ୍ଚୟ ସୁଖଦ ହେଇଛି ଓ ସୁବାସବାବୁ ବଧାଇ ଦେଇଛନ୍ତି—ନାଃ, ମୁଁ ଉର୍ମିଳାକୁ ଦୁଃଖ ଦେଇନାହିଁ ।

କେଉଁଦିନ ସଞ୍ଜବେଳେ ପାଖରେ ବସି ଚା' ପିଉ ପିଉ ସୁବାସବାବୁ ପଚାରନ୍ତି—"ଆଚ୍ଛା କହିଲ ଉର୍ମି, ଝିଅଦିନେ ବି ତମେ ଏଇମିତି ନାକକାନ୍ଦୁରା ଥିଲ ?"

ଉର୍ମିଳା ମୁରୁକି ହସି ମୁଣ୍ଡ ହଲାଇ ନାହିଁ କରନ୍ତି । ସୁବାସବାବୁ ଶେଷ ଫଇସଲା ଶୁଣିବା ଢଙ୍ଗରେ ବାଁ ହାତର ଖବରକାଗଜ ଥୋଇ ଦେଇ, ଟେବୁଲ ଉପରକୁ ଗୋଡ଼ ଦୁଇଟି ଟେକି ପଚାରନ୍ତି—"ତା'-ହେଲେ ମୋର ଘରେ କି ତମକୁ ଦୁଃଖ ମିଳୁଛି ବେଶି, ନା କ'ଣ ? ବାପଘରେ ବେଶି ସୁଖରେ ଥିଲ ?"

ଉର୍ମିଳା ନମ୍ରଗଛ ଗଛଳର ସୋର ସୋର ଖସ୍ରାଇ ଆଡ଼େ ଅନେଇ ଉତ୍ତର ଦିଅନ୍ତି—"ସେବେ ଝିଅଦିନ ଅଲଗା ଥିଲା ନା ! ଥରେ ଥରେ ଆମ କଲେଜର ଚେନାଚୁର ବାଲା କଇଁଥ ବି ଆଣେ, ଆମେ ସେଇଠି ଲୁଣ ଲଙ୍କା ଦଳି ଚଟଣୀ କରି ଖାଉ । ଆଉ ଲଗି ଲଗି ଦି' ତିନିଦିନ ଛୁଟି ପଡ଼ିଲା ତ କଟକରୁ ସୁମ ମାଉସୀ ଆସନ୍ତି, ତାଙ୍କ ଝିଅ ମୁନୁ ବି ଆସେ । ସିନେମା ପ୍ରୋଗାମ୍ ହୁଏ ସେଇଠୁ ।"

ସୁବାସବାବୁ ଅଧୈର୍ଯ୍ୟ ହୋଇ କହନ୍ତି—"ହେଲା ଯେ ମୁଁ ତୁମକୁ ସିନେମା ଦେଖେଇ କେବେ ନେଉନାହିଁ ନା କଇଁଥ ଚଟଣୀ କରିବାକୁ ମନା କରୁଛି ?"

ଊର୍ମିଳା ଦୃଷ୍ଟି ସେମିତି ନମ୍ବଗଛରେ ରଖି କହନ୍ତ—"ଭାଉଜଙ୍କ ସାଙ୍ଗେ କଳି ହେଲେ ମୁଁ କ'ଣ କାନ୍ଦେ ନାଇଁ, ରାଗି ରୁଷି ନଖାଇ ଶୁଏ । ସେଦିନ ଘରେ ଗୋଟାଏ ବଡ଼ ଘଟଣା ଜାଣ ! ଭାଉଜ ପୁଣି ଆସି ଊଠକନ୍ତି—ହଉ ଆସ, ମୋ' ସୁନା ନାକ ! ଆଉ ଯୋଉଥର ଆମେ କଲେଜରୁ ସପ୍ତଶଯ୍ୟା ପାଇଥିଲୁ—"

ସୁବାସବାବୁ ହତାଶ ହୋଇ ପୁଣି ଥରେ ଖବରକାଗଜ ମେଲନ୍ତି— "ତମେ ଊର୍ମି, କୁଆଡ଼େ ବୋଇଲେ କୁଆଡ଼କୁ ଚାଲିଯାଅ ।"

ତେବେ ଊର୍ମିଳା ଖୁସି ମନରେ ଗପୁଥିଲାବେଳେ ସୁବାସବାବୁ ଖବରକାଗଜ ପଢ଼ନ୍ତୁ କି ଟାଇଲ୍ ଦେଖନ୍ତୁ କିଛି ଯାଏଆସେ ନାହିଁ । ଏମିତିକି ଆହ୍ଲାଦରେ ବାଢ଼ି ଦେଇଥିବା କାକରା ପିଠା ଯଦି ଠେଲି-ଦେଲେ ଅଫିସରେ ଟି-ପାର୍ଟିଥିଲା ବୋଲି କହି କମ୍ପା ଅଳଗା ବାଗରେ ମୁଣ୍ଡ କୁଣ୍ଡେଇ ଲୁଗାଧଡ଼ିମିଶା ବାଇଗଣୀ ରଙ୍ଗର ଖୋପା କପାଳରେ ମାଡ଼ିଥିବା କଥା ବି ଯଦି ତାଙ୍କ ନଜରରେ ନ ପଡ଼ିଲା, ଊର୍ମିଳା ସାମାନ୍ୟ ଦୀର୍ଘଶ୍ୱାସଟିଏ ପକେଇ ସେକଥା ମନରୁ ପେ ଛାଡ଼ିଦେଇ ପାରନ୍ତି । କେବଳ ସହି ପାରନ୍ତି ନାହିଁ ଯଦି ସେ କାନ୍ଦୁଥିଲାବେଳେ ତାଙ୍କ ଲୁହକୁ ସ୍ୱାମୀ ଅଗ୍ରାହ୍ୟ କରିଗଲେ ।

କାରଣ ସୁବାସବାବୁ ଯେଉଁ ବିଶ୍ୱାସରେ ସେ ଥରକ ଉପସ୍ଥିତ କର୍ତ୍ତବ୍ୟ ଟାଳୁଥାଆନ୍ତୁ ନା କାହିଁକି, ଊର୍ମିଳାଙ୍କୁ ତାଙ୍କୁ ଆଖି ବୁଜିଦେବା କଥାଟି ଜଳ ଜଳ ଦେଖାଯାଏ । ସେଇଠୁ କାନ୍ଦର ଅସଲ କାରଣ ପାସୋର ଯାଇ ଊର୍ମିଳାଙ୍କର ସବୁ ରାଗ, ଅଭିଯୋଗ କେନ୍ଦ୍ରିତ ହୁଏ ଏଇ ନିକଟତମ ବ୍ୟକ୍ତିଟି ଉପରେ । ଆଉ ନୟନରେ ଚାହିଁଦେଲେ ଥରେ ମୋ' ଦୁଃଖ ଉଭେଇ ଯାଆନ୍ତା, ହେଲେ ଦେଖ ଚାହୁଁ ନାହିଁ କେମିତି । ଅକାରଣ ପେଖନା କରୁଛି ।

ରାତିସାରା ଊର୍ମିଳା ଆଉ ଶୋଇ ପାରନ୍ତି ନାଇଁ, ଏକଡ଼-ସେକଡ଼ ହୁଅନ୍ତି । କାନ୍ଦ ଆଉ ଲୁହ ହୋଇ ଝରେ ନାହିଁ, ବାମ୍ପ ହୋଇ ନିଷ୍ଫଳ କ୍ଷୋଭ ଆଖି ପତା, ଛାତି ଭିତର ପୋଡ଼ି ପକାଏ ।

ତଥାପି ପ୍ରତିକ୍ଷଣ ମନରେ ଆଶା ଥାଏ, ଏଇ ପିଟିରେ ଲାଗିଲାଗି ନିଷ୍ଟୁର ପାପୁଲିଟିଏ, ତାଙ୍କର ଦେହରେ ଶୀତଳ ଚନ୍ଦନ ପରି । ଆଉ ପ୍ରତିକ୍ଷଣ ନିରାଶା ବି ବଢ଼ୁଥାଏ ଚକ୍ରବୃଦ୍ଧି ହାରରେ ।

କେଉଁ କେଉଁ ଭାବନାରୁ ପ୍ରେରିତ ହୋଇ ସୁବାସ ବାବୁ ହାତ ବଢ଼ାଇ ଆସିଥାନ୍ତି ସବୁଦିନେ ଊର୍ମିଳାଙ୍କ କାନ୍ଧ ଆଡ଼କୁ, ତୁରନ୍ତ ହେଉ ବା ଉତ୍ତରରେ ହେଉ, ସେ ବିଷୟରେ ଉଭୟେ ବିଶେଷ ଚିନ୍ତା କରି ନଥିବେ । ଆଦ୍ୟ ବୈବାହିକ ଜୀବନରେ ଥିଲା ହୁଏତ ପ୍ରେମମିଶା କରୁଣା, ପୌରୁଷର ଆତ୍ମପ୍ରସାଦ । ତା'ପରେ କେବଳ ସମ୍ବେଦନା, ଦୟା । ପୁଣି ବା ସନ୍ଧି । ଭିନ୍ନ ଭିନ୍ନ ପ୍ରେରିତ ଭାବରୁ ପୁଣି ସୁବାସ ବାବୁଙ୍କୁ ମିଳେ ଭିନ୍ନ ଭିନ୍ନ ରସ—ଶୃଙ୍ଗାର, ବୀର, ଅଦ୍ଭୁତ, ଶାନ୍ତ !

ଊର୍ମିଳାଙ୍କ ପାଇଁ ଅବଶ୍ୟ ଏସବୁ ରସ ଗୌଣ । ତାଙ୍କ ଲାଗି ମୁଖ୍ୟ ହେଲା ତାଙ୍କ ନଇଁ ଆସୁଥିବା ମେରୁଦଣ୍ଡ ପୁଣି ଶକ୍ତ ପାଉ ଦେହ ମୁଣ୍ଡକୁ ସଳଖ ରଖିବାକୁ, ସେ ଶୁଣନ୍ତୁ ନିଜ କାନ ପାଖରେ—'ତୁ ଦରକାର ଏ ପୃଥିବୀ ପାଇଁ' ବୋଲି, ଟଳମଳ ହେଉଥିବା ପାଦ ପୁଣି ଗଛ ପରି ପୋତି ହୋଇଯାଉ । ତାଙ୍କ ଲାଗି ଖଣ୍ଡାରେ ଥରକୁ ଥର ଶାଣଦିଆ ଦରକାର, ଯୁଦ୍ଧ ପଡ଼ିଆ ଦରକାର ।

ଏଣେ ଦିନ ଯାଉ ଯାଉ ସୁବାସ ବାବୁଙ୍କୁ ଶାନ୍ତ ତୃପ୍ତି ଭିନ୍ନ ଅନ୍ୟ ରସ କ୍ୱଚିତ୍ ମିଳିଲା ଏପରି ଘଟଣାରୁ । ଟଣା ନ ହେଲେ ଯୁଦ୍ଧ ପଡ଼ିଆକୁ ଯିବା ଭଳି ପ୍ରକୃତି ତାଙ୍କର ବି କେବେ ନୁହେଁ ।

ଥରକର କଥା । କଅଣ ହେଲା କେଜାଣି, ଊର୍ମିଳାଙ୍କର ରାତିର କାନ୍ଦ ପାହାନ୍ତାରେ ପହଞ୍ଚିଲା, ପୁଣି ସକାଳର ଫୁଲା ଆଖି ରାତିଯାକେ ଝରିଲା ଲୁହ—ଏମିତି ଦିନେ ନୁହେଁ; ଦୁଇଦିନ ନୁହେଁ; ସାତଦିନ ସାତ ରାତି ତାଙ୍କ ଆଖି ବରଷି ଲାଗିଲା ଅବିରତ । ତଥାପି ପ୍ରତୀକ୍ଷିତ ହାତ ଆସିଲା ନାହିଁ, ଲମ୍ବି ଚାଲିଲା ବଢ଼ିମ୍ବିତ ପ୍ରହରମାନ ।

ସୁବାସ ବାବୁଙ୍କ କୋଣରୁ ଦେଖିଲେ କଥାଟା ଟିକିଏ ଅଲଗା । ପ୍ରଥମ ରାତିରେ ତ ସେ ନିଜ ପକ୍ଷ ନେଇ ଯୁକ୍ତି କରିଥିଲେ ଯେ ଆଜି ଦିନସାରା ବହୁତ ଖଟିଛି, ଅଫିସ୍‌ରେ ଅଧିକା ଫାଇଲ୍, ଉପରିସ୍ଥଙ୍କ

ଲାଗିବା—ଆଜ ଶୀଘ୍ର ଶୋଇବା ମୋର ପ୍ରାପ୍ୟ । ଘେରୁରୁ ବାଥ୍‌ରୁମ ଯିବାକୁ ନବ ଶୁଙ୍କିଲେ ଦେଖାଯିବ । ହେଲେ ହେଲ ନାହିଁ । ଉର୍ମିଳା ଆରପାଖକୁ ମୁହଁକରି ଶୋଇଥିଲେ । ଶୋଇଥାଉ ବରଂଗ, କାହିଁକି ନବ ଶୁଙ୍କିବା ପାହାନ୍ତାଟାରୁ । ସେଇଠୁ ଶୀଘ୍ର ଶୀଘ୍ର ଗୃହା, ଖିଅର, କାଗଜ-ପତ୍ର, ଅଫିସ । ନାକ ପୋଛୁଛ ଉମି, ହଶୁଚ ମୋ ଆଖି କଣରୁ । ହେଲେ ଏଇନା ମୋର ଫୁର୍‌ସତ୍ କାହିଁ ?

ସଞ୍ଜବେଳେ ବି ଠିକ୍ କଅଣ ହେଲ ସେ କହିପାରିବେ ନାହିଁ, ରବିବାବୁଙ୍କ ଘରଆଡେ ଯାଇଥିଲେ ଗୋଟାଏ କଥା ବୁଝିବା ଲଗି; ସେ ବାଧ କଲରୁ କଥା ଶୁଙ୍କି ହେଲ ନାହିଁ, ଗୃହା ପକୁଡ଼ି ତ.ସ୍ ହେଲ । ଆସୁ ଆସୁ ରାତ୍ର । ଉର୍ମିଳା ନଖାଇ ଶୋଇଚ । କାନ୍ଦୁଚ । ସୁବାସ ବାବୁ କହିଲେ—ମୋ' ଦେହଟା ଆଜ ଜମା ଭଲ ଲଗୁନ ଉମି । ଆଜି ଖାଇବନ, ଶୋଇବ ଯାଉଚ ।

ଗୃହର ଘୋଡ଼ହୋଇ ଶୋଇ ପଡ଼ିଲେ । ଯାଃ ସକାଳ ପାହୁ, ଦେଖାଯିବ ।

ଏପରି କିଂକର୍ତ୍ତବ୍ୟ-ବିମୂଢ଼ ଅବସ୍ଥା, ଆତ୍ମଗ୍ଳାନ ସତ୍ତ୍ୱେ ପାଦେ ଆଗକୁ ନ ବଢ଼ି ପାରୁଥିବାର କ୍ଳାନ୍ତ ସୁବାସ ବାବୁଙ୍କ ପାଇଁ ସେ ସମ୍ପୂର୍ଣ୍ଣ ନଆଁ ତା' ନୁହେଁ । ସାନ ସମସ୍ୟାଟିଏ; ପୁଣି କେତେ ଦେହଘଷା, ତଥାପି ଜଣ ଶୁଣା କେଇପାଦ ଆଗେଇବା କଥା ଭାବିଲ ବେଳକୁ ମାଡ଼ିପଡ଼େ କେମିତି ଗୋଟିଏ ଅବସାଦ, କଳାପରଦାଟିଏ ଘୋଡ଼େଇ ଦେଇ ଢେଇ ଶୋଇ ପକାଏ ମନକୁ, କୁହେ—ଥାଉ ଏବେ ।

ଏମିତି ଅବସ୍ଥାରେ ଘଣ୍ଟ କଣ୍ଟା କେତେବେଳଯାଏଁ ଲଖି ଯାଇ-ଥାଆନ୍ତା କେଜାଣି, କ'ଣ ହୋଇଥାନ୍ତା ଶେଷରେ ତା ପରିଣତି— ଉର୍ମିଳାଙ୍କ ଲୁହ ଆପେ ଶୁଖିଥାନ୍ତା, ନା ସାଙ୍ଗରେ ଭସେଇ ନେଇଥାନ୍ତା ତାଙ୍କ ଘରସଂସାର କିଏ ଜାଣେ—ଯଦି ଛୋଟ ଦୃଶ୍ୟଟିରେ ଅଂଶଗ୍ରହଣ କରିନଥାନ୍ତା ।

ସଞ୍ଜବେଳ । କ ଗୋଟାଏ କାମ ଆଳରେ ଘରୁ ବାହାରୁ ଗଲା-ବେଳକୁ ଠିକ୍ ଫାଟକ ପାଖେ ସୁବାସବାବୁ ମୁହାଁମୁହିଁ ହୋଇଗଲେ ବାହା

ଯାଙ୍ଗେ—କିଏ ବୋଲି ମୁହଁ ଟେକି ଅନେଇଲା ବେଳକୁ ଟୁନୁ । ପୁଟବଲ ଖେଳ ଫେରନ୍ତା ସେ ସ୍ପୋର୍ଟସ୍ ଗେଞ୍ଜି ଖଣ୍ଡିକ ପରିଓଦା ଦିଶୁଛି । ସିଏ ବି ଅନ୍ୟମନସ୍କ ଥିଲା ବୋଧେ, ବାପାଙ୍କ ସଙ୍ଗେ ଧକ୍କା ଖାଉ ଖାଉ ସମ୍ଭାଳି ଯାଇ କାନ କୁଣ୍ଡାଇ ହସୁଛି । ସୁବାସ ବାବୁ ଆଶ୍ଚର୍ଯ୍ୟରେ ଦେଖିଲେ ତାଙ୍କଠୁ ବି ଅଙ୍ଗୁଳିଏ ଉଚ୍ଚ ହୋଇଗଲାଣି ଟୁନୁ, ଅପ୍ରସ୍ତୁତ ଓଠ ଉପରେ ନୂଆ ନିଶ କେଡ଼େ ସୁନ୍ଦର ମାନୁଛି ।

ବାପାଙ୍କ ତୀକ୍ଷ୍ଣ ଦୃଷ୍ଟି ଆଡ଼େଇ ଚାଲି ଯାଉ ଯାଉ ଟୁନୁ ସଫେଇଦେଲା—"ଆଜି ଖେଳ ସରୁ ସରୁ ଟିକିଏ ଡେରି ହୋଇଗଲା ବାପା ।"

ସୁବାସବାବୁ ଖଣ୍ଡେ ଦୂର ଯାଇ ପୁଣି ଫେରିପଡ଼ି ଡାକିଲେ—"ଟୁନୁ ଶୁଣିଲୁ ।"

ଟୁନୁ ବାରଣ୍ଡା ପାଖରୁ ଫେରିଲା, ଜହ୍ନେଁ ଆସି ଫାଟକ ପାଖେ ଠିଆ ହେଲେ । ଟୁନୁର ଅତି ପାଖରେ ଠିଆ ହୋଇ, କାନକୁ ଲଗିଲା ପରି ସୁବାସ ବାବୁ ଧୀର ସ୍ୱରରେ କହିଲେ—"ଟିକିଏ ଗଲୁ ବାପା ଦେଖିବୁ, ମାଉ ମୁଣ୍ଡ ବିନ୍ଧୁଥିଲା, ତା' ମନଟା କାହିଁକି ଭଲ ନାହିଁ । ତାକୁ ଟିକିଏ ପଚାରିବୁ ବାପା ଗଲୁ ।"

ଟୁନୁର କ୍ଳାନ୍ତ ତରୁଣ ମୁହଁଟିରେ ଆଶ୍ଚର୍ଯ୍ୟ ଫୁଟିଲା । ତଳକୁ ମୁହଁପୋତି ତରତର ହୋଇ ଘର ଭିତରକୁ ଗଲାବେଳେ ସେ କେମିତି ଦୋଷୀ ଦୋଷୀ ଦିଶୁଥିଲା ।

ପରଦିନ ସନ୍ଧ୍ୟାରେ ବୁଢ଼ା ପିଉ ପିଉ ଖବରକାଗଜ ଫାଙ୍କରୁ ସୁବାସ ବାବୁ ଉର୍ମିଳାଙ୍କୁ ଅନେଇଲେ । ତାଙ୍କ ଆଖିତଳେ ଆଉ କଳାଦାଗ, ଫୁଲା ଓଠକୁ ଚମ କରୁ ବିଶେଷ ନାହିଁ । ଉର୍ମିଳାଙ୍କ ଦୃଷ୍ଟିରେ ଆଖି ମିଶେଇ ସୁବାସବାବୁ ହାଲୁକା ଗୁଣ୍ଡରେ ମୁରୁକି ହସିଲେ । ଉର୍ମିଳା ପାଖ ଚଉକିରେ ବସିଲେ । ଏଣୁ ତେଣୁ କଥା ଭିତରେ ଗେଲେଇ ହେଲାଭଳି ତାଙ୍କ ହାତରୁ ଖବରକାଗଜ ଟାଣିନେଇ କହିଲେ—"ମୋ' କଥା ଶୁଣ ଆଗ, ତା'ପରେ ପଢ଼ିବ ।"

ସୁବାସ ବାବୁ ଆଗ୍ରହରେ ଶୁଣିଲେ । କୁହ, କୁହ ଏଥର ଦୁନିଆଁ ସାକର କଥା କୁହ ।

"ବଦଳ ଅର୍ଡ଼ର୍ଟା କାଲେ ପୁଣି ଆସିଯିବ ବୋଲି ଆମେ କେତେ ଧନ୍ଦ ହେଉଥିଲେ । ଟୁନୁ କ'ଣ କହୁଛି ଜାଣ ? କହୁଛି—ବାପା ଏକା ଚାଲିଯାଆନ୍ତୁ, ମୁଁ ଘରଟା ଚଳେଇନେବିନି ? ହେଉ ବଦଳି, ଆମେ ରହିବା ଏଇଠି ।"

ଉର୍ମିଳାଙ୍କ ଏ ସ୍ୱର ହସ ହସ ଆତ୍ମବିଶ୍ୱାସ ସୁବାସ ବାବୁଙ୍କର କେଡ଼େ ଚିହ୍ନା । ହେଲେ ଉତ୍ସାହରେ କ'ଣ ବୋଲି କ'ଣ କହିଯାଉଛି ଉର୍ମିଳା !

—"କଣ କହୁଛି ଟୁନୁ ଶୁଣିଲଣି ? କହୁଛି— ମୁଁ କ'ଣ ଆଉ ଛୋଟ ପିଲା ହେଇ ଅଛି ମା ?"

